# BAMANA BRUKSHYA

by Rajyabardhana Dhalmahapatra
Published by Vidyapuri, Cuttack 753 002

ISBN - 978 - 81-7411-796-0

ପ୍ରଥମ ପ୍ରକାଶ
ଜାନୁୟାରୀ ୨୦୧୧

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

ଲିପି ସଂଯୋଜନ
ମଡର୍ଣ୍ଣ ଇନ୍‌ଫୋଟେକ୍
ଓଡ଼ିଆ ବଜାର, କଟକ

ମୁଦ୍ରଣ
ବନ୍ଦନା ପ୍ରିଣ୍ଟର୍ସ, କଟକ

ମୂଲ୍ୟ ଟ ୮୦.୦୦

# ସୂଚୀ





# ବାମନ ବୃକ୍ଷ

ପ୍ରଦର୍ଶନୀ ପଡ଼ିଆରେ ବିଭିନ୍ନ ବିଭାଗ ତରଫରୁ ଦିଆଯାଇଥିବା ଷ୍ଟଲ୍‌ଗୁଡ଼ିକ ବୁଲି ବୁଲି ଦେଖୁଥିଲି । ଉଦ୍ୟାନ ବିଭାଗ ଷ୍ଟଲ୍ ନିକଟରେ ଦୃଷ୍ଟି ମୋର ଅଟକିଗଲା । ସେଠାରେ ସଜା ଯାଇଥିବା ବିଭିନ୍ନ ପ୍ରକାରର ଫୁଲକୁଣ୍ଡର ସମାରୋହ ମୋତେ ଯେତିକି ଆକର୍ଷିତ କରି ନ ଥିଲା ତା'ଠାରୁ ଅଧିକ ଆକର୍ଷିତ କରିଥିଲା ବାମନୀକରଣ କରାଯାଇଥିବା ବିଭିନ୍ନ ବୃକ୍ଷରାଜି । ଫୁଟେ ଦେଢ଼ଫୁଟ ଉଚ୍ଚର ଗଛ ଦେହରେ ଲଦି ହୋଇଥିଲା ଗାଢ଼ ସବୁଜ ରଙ୍ଗର ଲେମ୍ବୁ, କମଳା ଓ ପିଜୁଳି । ଦେଖୁ ଦେଖୁ ମୁଁ ଚମକି ପଡ଼ିଲି ଗୋଟେ ବାମନ ବରଗଛ ଦେଖି, ଗଛଟି ଲାଗୁଥିଲା ପୂର୍ଣ୍ଣବୟସ୍କ ପରି । ତଳକୁ ଲମ୍ବି ଆସିଥିଲା ଗଇଁଠା ସୂତାପରି ଓହଳ । ଗଛର ଗଣ୍ଡିଟି ଗେବା ଗେବା ହେବା ସହ ଶାଖା ପ୍ରଶାଖା ବି ଥିଲା ଏକ ପୂର୍ଣ୍ଣବୟସ୍କ ଗଛ ପରି । ଯଦିଓ ଗଛଟି ବାମନାକୃତିର ଥିଲା କିନ୍ତୁ ପତ୍ର ଓ ଫଳଗୁଡ଼ିକ ଥିଲା ଏକ ସ୍ୱାଭାବିକ ପୂର୍ଣ୍ଣ ବିକଶିତ ବୃକ୍ଷ ପରି । ଗଛଟିକୁ ଦେଖୁ ଦେଖୁ ମୁଁ ତା' ପ୍ରତି ବିଶେଷ ଆଗ୍ରହୀ ହୋଇପଡ଼ିଲି । କୁଣ୍ଡ ପାଖରେ ଠିଆ ହୋଇ ତାକୁ ବହୁ ସମୟ ନିରୀକ୍ଷଣ କଲାପରେ ମୋତେ ଲାଗିଲା ଯେମିତି ଏ ଗଛର ପୂର୍ଣ୍ଣ ବିକଶିତ ରୂପକୁ ମୁଁ କେଉଁଠି ନା କେଉଁଠି ଦେଖିଛି । ଅଥଚ ଠିକ୍ ଭାବରେ ମନେ ପକାଇପାରୁ ନଥିଲି ଗଛଟିକୁ କେଉଁଠି ଦେଖିଛି ବୋଲି । ଗଛଟି ଲାଗୁଥିଲା ଯେମିତି ମୋ ଅବଚେତନ ମନରେ ସାଇତା ହୋଇଥିବା ଏକ ବିରାଟ ବୃକ୍ଷର ଫଟୋଗ୍ରାଫ୍ ପରି ।

ଗଛଟିକୁ କିଣିନେବା ଉଦ୍ଦେଶ୍ୟରେ ଷ୍ଟଲ୍ ଦାୟିତ୍ୱରେ ଥିବା କର୍ମଚାରୀଜଣକୁ ପଚାରିଲି- ''ଏହାର ଦାମ୍ କେତେ ?''

କର୍ମଚାରୀଜଣକ କହିଲେ- ''ଏଇଟି ବିକ୍ରିପାଇଁ ନୁହଁ, କେବଳ ପ୍ରଦର୍ଶନପାଇଁ ।''

ବିକ୍ରିପାଇଁ ନୁହଁ ଜାଣିବା ପରେ ମୋତେ ଲାଗିଲା ଯେମିତି ଏକ ଈପ୍‌ସିତ ବସ୍ତୁର ପ୍ରାପ୍ତିର ସୌଭାଗ୍ୟରୁ ମୋତେ ବଞ୍ଚିତ ହେବାକୁ ପଡୁଛି ।

''ଏ ଗଛ ଆପଣଙ୍କ ଡିପାର୍ଟମେଣ୍ଟଦ୍ୱାରା ହୋଇଛି ତ ?''

''ନା- ଆମ ଡିପାର୍ଟମେଣ୍ଟଦ୍ୱାରା ନୁହଁ, ଆମ ଡେପୁଟି ଡାଇରେକ୍ଟର ତାଙ୍କର ବ୍ୟକ୍ତିଗତ ସଉକ୍‌ରେ ଏ ଗଛଗୁଡ଼ିକ କରିଛନ୍ତି । ପ୍ରଦର୍ଶନୀରେ ଆମ ଷ୍ଟଲ୍‌କୁ ଆକର୍ଷଣୀୟ କରିବାପାଇଁ ଆମେ ତାଙ୍କଠାରୁ ଏ ଗଛସବୁ ଆଣି ରଖିଛୁ ।''

"ଏମିତିକା ଗଛଟିଏ କିଣିବାକୁ କେତେ ଟଙ୍କା ପଡ଼ିବ ?"

"ବନ୍‌ସାଇର ରେଟ୍ ତ ଗଛର ବୟସ ନେଇ ।"

"ଏ ଗଛର ବୟସ କେତେ ହେବ ?"

"ଠିକ୍ କରି ତ ଜାଣିନି ତଥାପି ପଚିଶ ତିରିଶ ବର୍ଷର ହେବ ନିଶ୍ଚୟ । ଏମିତିକା ଏକ ବନ୍‌ସାଇ ଗଛର ଦାମ୍ ହଜାରେ ଟଙ୍କାରୁ ଊର୍ଦ୍ଧ୍ୱ ହେବ ନିଶ୍ଚୟ ।"

ମୁଁ ଗଛଟି ପ୍ରତି ଏତେ ଆକର୍ଷିତ ହୋଇପଡ଼ିଥିଲି ଯେ ମୋର ଆବେଗ ସମ୍ଭାଳି ନ ପାରି କହିପକାଇଲି— "ତା'ଠାରୁ ଯଥେଷ୍ଟ ଅଧିକ ଟଙ୍କା ଦେଲେ କ'ଣ ଆପଣଙ୍କ ଡେପୁଟି ଡାଇରେକ୍ଟର ଏ ଗଛଟିକୁ ବିକ୍ରି କରିବେ ନାହିଁ?"

"ପଇସାପାଇଁ ଯେ ସେ ଏ ଗଛଟିକୁ ବିକ୍ରି କରିଦେବେ ସେ ଭରସା ମୋର ନାହିଁ । ତେବେ ଆପଣଙ୍କର ଯଦି ଏତେ ଆଗ୍ରହ ଅଛି ତେବେ ଆପଣ ଥରେ ତାଙ୍କ ସହ କଥାବାର୍ତ୍ତା କରନ୍ତୁ । ସେ ଯେମିତିକା ଲୋକ କାହାରି ଆଗ୍ରହ ଭାଙ୍ଗିପାରିବେ ନାହିଁ ।"

ଲୋକଟିର ସେହି କଥାପଦଟିରେ ମୋ ଭିତରେ ଗୋଟେ ଆତ୍ମବିଶ୍ୱାସ ଜନ୍ମିଲା .ଯେ ମୁଁ ଡେପୁଟି-ଡାଇରେକ୍ଟରଙ୍କୁ କଳେବଳେ କୌଶଳରେ ରାଜି କରାଇ ଗଛଟିକୁ ଆଣିପାରିବି ବୋଲି ।

ପରଦିନ ପହଞ୍ଚିଲି ତାଙ୍କ ଅଫିସ୍‌ରେ, ତାଙ୍କ. ସହ କିଛି ସମୟ ଆଲୋଚନା ପରେ ପଚାରିଲି ବନ୍‌ସାଇ ଗଛ ପ୍ରସ୍ତୁତ କରିବାର ପଦ୍ଧତି ବିଷୟରେ । ବନ୍‌ସାଇ ଗଛ ବିଷୟରେ ମୋର ଆଗ୍ରହ ଦେଖି ସେ ତାଙ୍କ ର୍ୟାକ୍‌ରୁ ବାହାର କଲେ ବହିଟିଏ । ବହିଟିକୁ ମୋ ହାତକୁ ବଢ଼ାଇ ଦେଇ କହିଲେ- "ଏବେ ଏ କଳା ବହୁତ ଆଗେଇ ଗଲାଣି । ଏହା ଉପରେ ଅନେକ ବହି ଲେଖା ଗଲାଣି । ଆପଣ ଏ ବହିଟିକୁ ପଢ଼ିଲେ ଏ କଳା ଉପରେ ଆପଣଙ୍କର ଏକ ମୋଟାମୋଟି ଧାରଣା ଆସିଯିବ ।"

ମୁଁ ବହିଟିକୁ ଓଲଟାଇ ପୃଷ୍ଠା ପରେ ପୃଷ୍ଠା ଦେଖି ଚାଲିଥାଏ ସତ କିନ୍ତୁ ମନେ ମନେ ଚିନ୍ତା କରୁଥାଏ, ସେ ବନ୍‌ସାଇ ଗଛଟି ସମ୍ପର୍କରେ ତାଙ୍କୁ କିପରି ପଚାରିବି । ସେ ମୋର ବହି ଓଲଟାଇବାର ଆଗ୍ରହକୁ ଲକ୍ଷ୍ୟ କରି କହିଲେ— "ଖାଲି ଓଲଟାଇ ବହିଟିକୁ ଦେଖିଗଲେ କିଛି ହେବ ନାହିଁ । ଯଦି ଏ କଳାରେ ଆପଣଙ୍କର ରୁଚି ଅଛି ତେବେ ବହିଟି ଆପଣ ପଢ଼ିବାକୁ ନେଇପାରନ୍ତି ।"

"ମୁଁ ଶୁଣିଥିଲି ଏ ବିଷୟରେ ଆପଣଙ୍କର ରୁଚି ଓ ଜ୍ଞାନ ବହୁତ ଅଛି ବୋଲି ?"

"ଜ୍ଞାନ ବିଷୟରେ ତ କହିପାରିବିନି ତେବେ ରୁଚି ରଖେ । ରଖେ ମାନେ ରଖୁଥିଲି ।"

"ରଖୁଥିଲି ଅର୍ଥାତ୍ ଏବେ କ'ଣ ରଖିନାହାନ୍ତି କି ?"

"ଏବେ ରୁଚି ମୋଟାମୋଟି ନାହିଁ କହିଲେ ଚଳେ ।"

"କାହିଁକି ?"

"କେତେଗୁଡ଼ିଏ ବ୍ୟକ୍ତିଗତ କାରଣପାଇଁ ମୁଁ ସେ କଳାରୁ ନିଜକୁ ଦୂରେଇ ନେଇଛି ।"

"ସେ କାରଣଗୁଡ଼ିକ କ'ଣ କିଛି ଜାଣିପାରେ କି ?"

"ବ୍ୟକ୍ତିଗତ କାରଣ ବୋଲି କହିବା ପରେ ଆଉ ସେ ବିଷୟରେ ପଚାରିବା ଠିକ୍ ହେବ ନାହିଁ ।"

"ଓଃ-ସରି ! ପ୍ରଦର୍ଶନୀରେ ଆପଣଙ୍କର ସେହି ବନ୍‌ସାଇ ବରଗଛଟି ଦେଖିବା ପରେ ସେ ଗଛଟି ପ୍ରତି ଏତେମାତ୍ରାରେ ଆଗ୍ରହାନ୍ୱିତ ହୋଇପଡ଼ିଲି ଯେ ଆପଣଙ୍କୁ ବ୍ୟକ୍ତିଗତ ଭାବେ ସାକ୍ଷାତ୍ କରିବାକୁ ଚାଲିଆସିଲି ।"

"ସେ ଗଛଟି ତେବେ ଆପଣଙ୍କୁ ଭଲ ଲାଗିଛି ?"

"ଖାଲି ଭଲ ଲାଗିଛି ନୁହଁ— ଯଦି ଆପଣ ରାଜି ହୁଅନ୍ତି ତେବେ ମୁଁ ତାହାର ଉଚିତ ଦାମ୍ ଦେଇ..."

"ଆପଣ ଗଛଟିକୁ କିଣିବାକୁ ଚାହାନ୍ତି ତା'ହେଲେ ?"

"ଚାହୁଁଛି ସତ, ମାତ୍ର ଯଦି ଏଥିରେ ଆପଣଙ୍କର ଆପତ୍ତି ଥାଏ ତେବେ ମୁଁ ଦୁଃଖିତ ହେବି ନାହିଁ ।"

ସେ କିଛି ସମୟ ଗୁମ୍ ମାରି ବସିସାରିବା ପରେ କହିଲେ— "ମୁଁ ସଙ୍ଗେ ସଙ୍ଗେ ଆପଣଙ୍କୁ କୌଣସି ପ୍ରତିଶ୍ରୁତି ଦେଇପାରୁନି । ତେବେ ଆପଣ ଆସନ୍ତାକାଲି ଅପରାହ୍ଣରେ ଆସନ୍ତୁ, ମୁଁ ମୋର ମତାମତ ଜଣାଇବି ।"

ତା' ପରଦିନର ଅପରାହ୍ଣ ପର୍ଯ୍ୟନ୍ତ ଅପେକ୍ଷା ବୋଧହୁଏ ମୋ ଜୀବନର ସବୁଠୁଁ ଦୀର୍ଘତମ ଅପେକ୍ଷା ଥିଲା । ମୁଁ ମନେ ମନେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥାଏ ଯେ ସେ ଯେମିତି ହେଲେ ତାଙ୍କୁ ରାଜି କରାଇ ଗଛଟି ମୋତେ ଦେବାର ବ୍ୟବସ୍ଥା କରନ୍ତୁ ।

ଅପରାହ୍ଣରେ ତାଙ୍କ ଅଫିସ୍‌ରେ ପହଞ୍ଚିବା ସଙ୍ଗେ ସଙ୍ଗେ ସେ ମୋ ହାତକୁ ଗୋଟେ ସ୍ଲିପ୍ ବଢ଼ାଇ ଦେଲେ । କହିଲେ— "ପ୍ରଦର୍ଶନୀ ପରେ ଏ ସ୍ଲିପ୍ ଦେଖାଇ ଆପଣ ସେଠାରୁ ସେ ଗଛଟିକୁ ନେଇଯିବେ ।"

ମୁଁ ସ୍ଲିପ୍‌ଟିକୁ ଏକ ପରମପ୍ରାପ୍ତିର ଅନୁଭବରେ ଧରି ଅପେକ୍ଷା କଲି ଗଛଟିର ଦାମ୍ ବିଷୟରେ ସେ କ'ଣ କହୁଛନ୍ତି ବୋଲି । ସେ ମୋର ମନୋଭାବକୁ ଠିକ୍ ବୁଝିପାରି କହିଲେ- "ଏ ସବୁ ଜିନିଷର ଦାମ୍ କରିହୁଏନା । ତେବେ ଆପଣଙ୍କର ଆଗ୍ରହପାଇଁ ଏଇଟି ମୋ ତରଫରୁ ଆପଣଙ୍କୁ ଉପହାର ।"

ପ୍ରଦର୍ଶନୀ ପରେ ଗଛଟିକୁ ଧରି ମୁଁ ଘରକୁ ଆସିଲାବେଳେ ମୋ ଭିତରେ ଥିଲା ଏକ ପୁଲକିତ ଅନୁଭବ । ଦ୍ରୌପଦୀଙ୍କୁ ସ୍ୱୟଂବରରେ ଜିତି ଫେରିଥିବା ପାଣ୍ଡବମାନଙ୍କର ଏମିତିକା ଏକ ଅନୁଭବ ହୋଇଥିବ କି ନା ସନ୍ଦେହ । ପୋର୍ଟିକୋ ତଳେ ଗଛଟିକୁ ରଖିଦେଇ ଘର ଭିତରକୁ ଗଲି ମୋ ବୋଉ ଓ ପତ୍ନୀ ସ୍ମିତାଙ୍କୁ ଡାକି ଏକ ସରପ୍ରାଇଜ୍ ଦେବାପାଇଁ ।

ସେମାନଙ୍କୁ ବାହାରକୁ ଡାକିଆଣି କହିଲି- "ତମେମାନେ ନିଜେ ନିଜେ କୁହ କିଛି ଗୋଟେ ଫରକ ବାରିପାରୁଛ କି ପୋର୍ଟିକୋ ତଳେ ।"

ବୋଉ ଆଖିରେ ଚଟ୍‌କିନା ପଡ଼ିଗଲା ଫରକଟି । ସେ କହିଲା— "ଆରେ ଏ ବାମନ ବରଗଛଟିକୁ କେଉଁଠୁ ଆଣିଲୁ ?"

"ପ୍ରଦର୍ଶନୀରୁ ।"

"କ'ଣ ଘରର ବଗିଚାରେ ଲଗାଇବୁ ?"

"ଲଗାଇବି କ'ଣ— ଗଛଟି ଏଇ କୁଣ୍ଡରେ ରହିବ ।"

"କୁଣ୍ଡରେ ବରଗଛ, ପୁଣି ଘରର ବଗିଚାରେ !"

"କ'ଣ ହେଲା ସେଠୁ ?"

"ତତେ ଏ ବୁଦ୍ଧି କିଏ ଦେଲାରେ ? ଅଗଣାରେ ବରଗଛ ଜମା ଶୁଭ ନୁହଁ । ରାସ୍ତା କଡ଼ରେ ବରଗଛ ପୋତିଲେ ସିନା ଶୁଭ ଓ ଧର୍ମ । ବାଟୋଇଙ୍କୁ ଛାଇ ଦେବ ଓ ଚଢ଼େଇ ଚିରୁଗୁଣୀ ବସା ବାନ୍ଧିବେ । ହେଲେ ଇଏ ବାମନ ବରଗଛଟାଏ, ନା ଛାଇ ଦେବ ନା ତା' ଡାଳରେ କିଏ ବସା ବାନ୍ଧି ପାରିବେ ?"

"ତୋର ଯେତେ ସବୁ ମରହଟ୍ଟୀ ବୁଦ୍ଧି । ବୁଝିଲୁ, ଏଇଟା ହେଲା ବନ୍‌ସାଇ ଗଛ । ପୋର୍ଟିକୋ କିମ୍ବା ଡ୍ରଇଂ ରୁମ୍‌ର ଶୋଭାପାଇଁ ଏ ଗଛ ତିଆରି କରାଯାଇଛି, ଛାଇ ଦେବାପାଇଁ କି ଚଢ଼େଇ ଚିରୁଗୁଣୀ ବସା ବାନ୍ଧିବାପାଇଁ ନୁହଁ ।" ମୋ କଥାର ପକ୍ଷ ସମର୍ଥନପାଇଁ ମୁଁ ଚାହିଁଲି ମୋ ସ୍ତ୍ରୀଙ୍କ ଆଡ଼େ ।

ସେ ବୋଧହୁଏ ଆମ ମାଆ ପୁଅଙ୍କର ଦ୍ୱନ୍ଦ୍ୱରେ ପଶିବାକୁ ଚାହୁଁ ନ ଥିଲେ । କେବଳ କହିଲେ— "ଗଛଟି ବହୁତ ସୁନ୍ଦର ହୋଇଛି । ଗୋଟିଏ ପୂର୍ଣ୍ଣବୟସ୍କ ବନ୍‌ସାଇ ନିଶ୍ଚୟ !"

ବୋଉ ଜାଣିପାରିଲା ତା' ମତାମତର କୌଣସି ଗୁରୁତ୍ୱ ରହିବ ନାହିଁ, କେବଳ କହିଲା— "ବନ୍‌ସାଇ କି ଫନ୍‌ସାଇ ତ ମୁଁ ଜାଣେନା, ତେବେ ଘର ଅଗଣାରେ ବରଗଛ ଶୁଭଫଳ ଦିଏନା ବୋଲି ମୁଁ ଜାଣିଛି । ଏବେ ଯୁଗ ଆଗେଇ ଗଲାଣି । ମାଣେ ମାଣେ ଜମି ମାଡ଼ି ବସୁଥିବା ଝଙ୍କାଳିଆ ବରଗଛ ଏଇନେ କୁଣ୍ଡ ମଧ୍ୟକୁ ଆସିପାରିଲାଣି । ହଉ, ତମର ଯେଉଁଥିରେ ଖୁସି ସେଇଆ କର ।"

ମୁଁ ଜାଣୁଥିଲି ବୋଉର ରହଣି ଏଠାରେ ବେଶିଦିନ ନୁହଁ । ସ୍ମିତାଙ୍କର ମର୍ଣ୍ଣିସିକ୍‌ନେସ୍ ଥିବାରୁ ସେ ଏଠାକୁ ଆସିଛି । ସେ ସ୍ୱାଭାବିକ ଅବସ୍ଥାକୁ ଆସିଗଲେ ବୋଉ ଗାଆଁକୁ ଚାଲିଯିବ, ପୁଣି ଯାଇ ଆସିବ ଡେଲିଭରି ବେଳକୁ ।

ବରଗଛଟିକୁ ଡ୍ରଇଁ ରୁମ୍‌ରେ ରଖିବାକୁ ମନସ୍ଥ କରି ତା'ର ଇଣ୍ଟେରିଅର ଡେକୋରେସନ୍‌କୁ ଆମକୁ ପୂରା ବଦଳାଇବାକୁ ପଡ଼ିଲା । ଗୋଟିଏ କୋଣରେ ରଖାଗଲା ଟି.ଭି. ଓ ଆର କୋଣରେ ଗଛଟିକୁ । ଯେମିତି ଟି.ଭି. ଦେଖିବା ସମୟରେ ମଧ୍ୟ ଦେଖି ହେଉଥିବ ଗଛଟିକୁ ଏବଂ ଯେ କେହି ଅତିଥି ଆସିଲେ ଯେମିତି ତାଙ୍କ ନଜରରେ ପଡ଼ିପାରିବ ଗଛଟି ।

ସେଦିନ ରାତିରେ ମୁଁ ବସି ସମାଚାର ଦେଖିବା ସମୟରେ ବୋଉ କାର୍ପେଟ ଉପରେ ବସି ପାନ ଭାଙ୍ଗୁଥିଲା । ପାନ ଭାଙ୍ଗୁ ଭାଙ୍ଗୁ କହିଲା- "ଏ ଗଛଟିକୁ ଦେଖିଲେ ମୋର ତମ ଗାଆଁ ବାରମାଣିଆ ପାଟର ଟିକି ବରଗଛ କଥା ଖିଆଲ ପଡୁଛି ।"

ମୁଁ ଚଟ୍‌କିନା ବୋଉର କଥାକୁ ଧ୍ୟାନ ଦେଇ କହିଲି- "କେଉଁ ବରଗଛ କଥା ତୁ କହିଲୁ ?"

"ବାରମାଣିଆ ପାଟର ସେହି ଟିକି ବରଗଛ ମ'— ଯେଉଁଠି ସେ ଭୋବନା ବେହେରା ରଶି ଲଗାଇ ମରିଥିଲା, ତୁ ତ କାହିଁ କେବେଠାରୁ ଗାଆଁ ଛାଡ଼ିଲୁଣି, ତୋର କ'ଣ ଆଉ ସେ ଗଛ କଥା ମନରେ ଥିବ ।"

"ଠିକ୍ କଥା କହିଲୁ । ପ୍ରଦର୍ଶନୀ ପଡ଼ିଆରେ ଗଛଟିକୁ ଦେଖିବା ବେଳଠାରୁ ମୁଁ ମନେ ମନେ ଭାବୁଥିଲି ଏମିତି ଏକ ଗଛର ବଡ଼ ରୂପକୁ ମୁଁ କେଉଁଠି ନା କେଉଁଠି ଦେଖିଛି ଅଥଚ ମନେ ପକାଇପାରୁ ନ ଥିଲି । ପିଲାଦିନେ ବାପାଙ୍କପାଇଁ ବିଲକୁ ଖାଇବାକୁ ନେଇଯିବା ବେଳେ ତା'ର ଓହଳ ଓ ଡାଳରେ ମୁଁ କେତେଥର ଖେଳିଛି ଅଥଚ ଦେଖି ତ ମୁଁ ମନେ ପକାଇପାରୁ ନ ଥିଲି । ଏମିତି ଏକ ଗଛର ବଡ଼ରୂପ ମୁଁ ଦେଖିଥିଲି ବୋଲି ତ ଆକର୍ଷିତ ହୋଇପଡ଼ିଲି ଏହାକୁ ଆଣିବାପାଇଁ ।"

ବୋଉ କୌତୂହଳୀ ହୋଇ ପଚାରିଲା- "ଏ ଗଛକୁ କେମିତି ଏମିତି ଛୋଟ କରୁଛନ୍ତି ? ଏ ଗଛଟିର ତ ବୟସ ହୋଇଯାଇଛି ବୋଲି ତା'ର ଓହଳ ଓ ଫଳକୁ ଦେଖିଲେ ଲାଗୁଛି ।"

"ସବୁ ବିଜ୍ଞାନ ଓ ମଣିଷର କରାମତି ବୋଉ !"

"ମଲା, ଭଲ କଥା ସିନା ବିଜ୍ଞାନ କରନ୍ତା । ଏଇ ଅଡେଲା କଥାରେ ବି ତମ ବିଜ୍ଞାନ ମୁଣ୍ଡ ଖେଳାଉଛି । ଗଛକୁ ଯଦି ବାମନ କରିପାରୁଛନ୍ତି ସଉକ୍ ପାଇଁ, ତା'ହେଲେ ଖେଳିବାପାଇଁ ଆଉ କଣ୍ଢେଇ ନ କିଣି କେଉଁଦିନ ମଣିଷକୁ ବି ବାମନ କରି ଖେଳନା କରିବେ ।"

ବୋଉ ଓ ମୋ ଭିତରେ ଚାଲିଥିବା କଥାବାର୍ତ୍ତାକୁ ଶୁଣୁଥିଲେ ସ୍ମିତା । ସେ ବୋଉର ପକ୍ଷ ସମର୍ଥନ କରି କହିଲେ- "ପ୍ରକୃତି ଉପରେ ମଣିଷର ଇଏ ଏକ ରୀତିମତ ଅତ୍ୟାଚାର । ବଢ଼ିବାକୁ ଚାହୁଁଥିବା ଗୋଟେ ଗଛର ଚେରକୁ ବାରମ୍ବାର କାଟି କାଟି ଏବଂ ତାକୁ କେବଳ ବଞ୍ଚିବା ନିମିତ୍ତ ଖାଦ୍ୟଦେଇ ବଢ଼ିବାର ସୁଯୋଗ ନ ଦେବାଟା ଅନ୍ୟାୟ ନିଶ୍ଚୟ ।"

"ରଖ, ରଖ ତମର ସେ ଦାର୍ଶନିକ ଭାବ । କ୍ଷୁଦ୍ର ଭିତରେ ସୌନ୍ଦର୍ଯ୍ୟର ଝଲକ ନ ଦେଖି ତମେ ସବୁ ଅଯଥା କଥାରେ ମୁଣ୍ଡ ଖେଳାଉଛ ।"

ପରଦିନ ସକାଳୁ ମୁଁ ଉଠିବା ବେଳକୁ ବୋଉ ଗାଧୋଇ ଠାକୁରଙ୍କ ପୂଜା ସାରି ବରଗଛଟି ମୂଳରେ ମନ୍ତ୍ରପଢ଼ି ପାଣି ଢାଳୁଥାଏ । ମୁଁ ଚିତ୍କାର କରି କହିଲି-"ଇଏ ତୁ କ'ଣ କରୁଛୁ ବୋଉ ? ସେ ଗଛରେ ପାଣି ଦେବାର ଭାଗମାପ ଓ ସମୟ ଅଛି । ତୁ ଯଦି ଏପରି ଗାଧୋଇସାରି ପାଣି ଦେବୁ ତେବେ ତ ସେ ଧୀରେ ଧୀରେ ଆମ ଗାଆଁ ଟିକି ବରଗଛ ହୋଇଯିବ, ଆଉ କ'ଣ କୁଣ୍ଡରେ ନା ଡ୍ରଇଂ ରୁମ୍‌ରେ ରହିବ ।"

ବୋଉ ଚୁପ୍‌ଚାପ୍ ତା'ର ପାଣିଦେବା କର୍ମ ସାରିବା ପରେ କହିଲା— "ବର କିମ୍ବା ଅଶ୍ୱତ୍ଥ ବୃକ୍ଷ ଘର ଭିତରେ ରହିଲେ ବି ତାକୁ ଗାଧୋଇସାରି ଟିକିଏ ଜଳଦାନ କରିବା ବିଧି । ତମ ବିଜ୍ଞାନ ପରା କହିଛି ଗଛର ଜୀବନ ଅଛି ବୋଲି !"

ମୁଁ ଆଉ ସକାଳୁ ସକାଳୁ ବୋଉ ସହ ଏ ବିଷୟରେ ଯୁକ୍ତି ତର୍କ ନ କରିବାକୁ ଚାହିଁ ଚୁପ୍ ରହିଲି ।

ସ୍ମିତାଙ୍କର ମର୍ଣ୍ଣିସିକ୍‌ନେସ ବନ୍ଦ ହୋଇଯିବା ପରେ ସେ ଧୀରେ ଧୀରେ ସୁସ୍ଥ ହେଉଥିଲେ । ତାଙ୍କର ସୁସ୍ଥତା ଦେଖି ବୋଉ କହିଲା- "ମୁଁ ଏବେ ଘରକୁ ଚାଲିଯାଉଛି । ସେପଟର କାମକୁ ବି ଦେଖିବାକୁ ପଡ଼ିବ । ଡେଲିଭରି ମାସେ ଖଣ୍ଡେ ଥିବ ମୁଁ ପୁଣି ଆସିବି ।"

ବୋଉ ଗାଆଁକୁ ଯିବାବେଳେ ଗାଡ଼ିରେ ବସୁ ବସୁ ମୋତେ କହିଲା- "ସେ ଗଛଟିରେ ମୁନ୍ଦେ ମୁନ୍ଦେ ପାଣି ଦେଉଥିବୁରେ ।"

ମୁଁ ଖୁବ୍ ହାଲ୍କା ଭାବେ 'ହଁ' ଟିଏ ମାରିଦେଇ ଚିନ୍ତା କରୁଥିଲି ଗଛଟି କେମିତି ବୋଉର ଚେତନା ରାଜ୍ୟକୁ ମାଡ଼ିବସିଛି ବୋଲି ।

ଦିନେ ରାତିର ବିଳମ୍ବିତ ପ୍ରହର ଯାଏଁ ମୁଁ ବସି ଟି.ଭି. ଦେଖୁଥାଏ । ସ୍ମିତା ଶୋଇଯାଇଥିଲେ ବେଡ୍ ରୁମ୍‌ରେ, କୁଣ୍ଡ ଭିତରେ ଥିବା ଗଛଟିକୁ ମୁଁ କିଛି ସମୟ ନିବିଷ୍ଟ ହୋଇ ଚାହିଁଲି । ମୋତେ ଲାଗିଲା ଗଛ ଭିତରୁ ଯେମିତି ଏକ ଆର୍ତ୍ତ ଆବେଦନ ଆସୁଛି- ମୋତେ ଏ ବାମନ ଜନ୍ମରୁ ମୁକ୍ତି କର, ମୁଁ ଖୁବ୍ ତୃଷାର୍ତ୍ତ, ମୋତେ ଜଳ ଦିଅ । ମୋ ଭିତରେ ଥିବା ବିରାଟ କାୟା ବିସ୍ତାରର ଶକ୍ତିକୁ ଏମିତି ସୀମିତ କରନା ।

ଏ ମୋର ମାନସିକ ଭ୍ରାନ୍ତି ହୋଇପାରେ ଭାବି ନିଜକୁ ପ୍ରକୃତିସ୍ଥ କଲି । କିଛି ସମୟ ପରେ ମୋର ପୁନଃ ଅନୁଭବ ହେଲା ଗଛଟି ତା'ର କାୟା ବିସ୍ତାର କରୁଛି । ବଢ଼ି ବଢ଼ି ସେ ପାଲଟି ଯାଉଛି ଆମ ଗାଆଁର ଟିକି ବରଗଛ । ଗଛଟି ମୋର ମାନସିକ ଭ୍ରାନ୍ତି ଓ ଉଦ୍‌ବେଳନ ସୃଷ୍ଟି କରୁଛି ଭାବି ଟି.ଭି. ବନ୍ଦ କରି ଶୋଇବାକୁ ଚାଲିଗଲି । ତା' ପରଠାରୁ ଗଛଟିକୁ ଆଉ କେବେ ନିବିଷ୍ଟ ଭାବରେ ଦେଖିବାପାଇଁ ମୁଁ ଚେଷ୍ଟା କରିନି ।

ଥରେ ରାତିଅଧରେ ସ୍ମିତା ନିଦରୁ ଉଠିପଡ଼ି ମୋତେ ଉଠାଇଲେ- "ହେ, ଉଠ, ଉଠ ତ । ମୋତେ ଖୁବ୍ ଶୋଷ ଲାଗୁଛି ।"

ମୁଁ ଉଠି ରୁମ୍‌ର ଲାଇଟ୍ ଜଳାଇଲି । ତାଙ୍କ ପାଇଁ ପାଣି ଗ୍ଲାସ୍‌ଟିଏ ଆଣିଲି । ପାଣିତକ ପିଇସାରି ସେ କହିଲେ— "ଆଉ ଗୋଟେ ଗ୍ଲାସ୍ ।" ଦ୍ୱିତୀୟ ଗ୍ଲାସ୍ ପାଣି ପିଇସାରିବା ପରେ କହିଲେ- "ମୋତେ ଏମିତି ଲାଗୁଛି ଯେ ଯେତେ ପାଣି ପିଇଲେ ବି ମୋ ଶୋଷ ମରିବ ନାହିଁ । କି ଅଜବ ସ୍ୱପ୍ନଟିଏ ଦେଖିଲି ଯେ ମୁଁ !"

"କି ସ୍ୱପ୍ନ ଦେଖିଲ ?"

"ମୁଁ ସ୍ୱପ୍ନ ଦେଖିଲି- ମୋ ଭିତରେ ବଢୁଥିବା ଶିଶୁଟି କହୁଛି ମୁଁ କ୍ଷୁଧାର୍ତ୍ତ ଓ ତୃଷାର୍ତ୍ତ । ମୋତେ ଖାଦ୍ୟ ଓ ଜଳ ଦିଅ । ସେ ଖାଦ୍ୟ ଓ ଜଳ ନ ପାଇ ସଂଗ୍ରାମ କରୁଛି । ତା'ର କ୍ଷୁଧା ଓ ତୃଷ୍ଣା ମେଣ୍ଟାଇବାର ସଂଗ୍ରାମରେ ସେ ରାମ୍ପୁଡ଼ି ବିଦାରି ପକାଇବାକୁ ଚାହୁଁଛି ସମଗ୍ର ବସୁଧା । ଇଏ କେମିତିକା ସ୍ୱପ୍ନ ?"

"ତମେ ଆଜି ରାତିରେ ଠିକ୍ ଭାବରେ ଖାଇଥିଲ ତ ? ତମକୁ ଏଇନେ ଭୋକ-ଭୋକ ଲାଗୁଛି କି ?"

"ନାହିଁ ତ-।"

"ମୁଁ କ'ଣ କହୁଥିଲି କି ତମେ ଏଇନେ ଏକା ନୁହଁ । ତମ ଭିତରୁ ଖାଦ୍ୟ ନେଇ ଆଉ ଗୋଟେ ଜୀବନ ବଢ଼ୁଛି । ଖାଇବା ସମୟରେ ତା' ପାଇଁ ବି ଧ୍ୟାନ ଦେବାକୁ ପଡ଼ିବ ।"

ଏହା ପରଠାରୁ ସ୍ମିତା ସବୁଦିନ ସକାଳୁ ଉଠି ତାଙ୍କର ଭିନ୍ନ ଭିନ୍ନ ସ୍ୱପ୍ନର ଘଟଣାମାନ ଗପନ୍ତି । ଯେଉଁ ଦିନ ତାଙ୍କଠାରୁ କୌଣସି ସ୍ୱପ୍ନ କଥା ନ ଶୁଣେ ମୁଁ ପଚାରେ ଆଜି କ'ଣ କୌଣସି ସ୍ୱପ୍ନ ବୃତ୍ତାନ୍ତ ନାହିଁ କି ?

"ସେଇ ଏକା ପ୍ରକାରର ସ୍ୱପ୍ନ—ଭୋକ ଓ ଶୋଷ ପ୍ରାୟ ସବୁଦିନ ତ ଦେଖୁଛି । କେତେଦିନ ଯାଏଁ ତାକୁ ଆଉ ରିପିଟ୍ କରି ତମକୁ ଶୁଣାଉଥିବି । ମୁଁ ଏବେ ଧରି ନେଇଛି ଏ ଗୁଡ଼ାକ ସବୁ ଗର୍ଭାବସ୍ଥାର ଲକ୍ଷଣ ବୋଲି ।"

"ଗର୍ଭାବସ୍ଥାର ଲକ୍ଷଣ ଯେ ହେଲେ ସମୟାନୁଯାୟୀ ଗର୍ଭର ଆକାର ତ କାହିଁ ମୁଁ ଦେଖିପାରୁ ନାହିଁ ।"

"ତମର ଯେଉଁ ସନ୍ଦେହ ହେଉଛି ମୋର ବି ସେହି ସନ୍ଦେହ ହେବାରୁ ମୁଁ ସେଦିନ ଚେକ୍‌ଅପ୍ ସମୟରେ ଡାକ୍ତରାଣୀଙ୍କୁ ପଚାରିଲି । ସେ କହିଲେ ପ୍ରଥମ ପ୍ରେଗ୍‌ନାନ୍‌ସୀ ସମୟରେ ଜଣଜଣଙ୍କର ତ ଗର୍ଭାବସ୍ଥା ଅଛି ବୋଲି ଜାଣିହୁଏନା ।"

ଧୀରେ ଧୀରେ ସମୟ ଗଡ଼ିଗଲା । ବୋଉ ବି ମାସ ଗଣି ଗାଆଁରୁ ସାନଭାଇକୁ ଧରି ଆସି ପହଞ୍ଚିଗଲା ଡେଲିଭରିପାଇଁ, ପହଞ୍ଚୁ ପହଞ୍ଚୁ ଖୁବ୍ ବିସ୍ମୟରେ ସ୍ମିତା ଆଡ଼େ ଚାହିଁ ପଚାରିଲା- "ତୋ'ର ସବୁ ଠିକ୍ ଠାକ୍ ତ ?"

"ହଁ- ସବୁ ଠିକ୍ ଅଛି । ରେଗୁଲାର ଚେକ୍‌ଅପ୍ ମଧ ହେଉଛି ।"

"ଡାକ୍ତର କେବେକୁ ଡେଟ୍ ଦେଇଛି ?"

"ଡାକ୍ତରଙ୍କ ଡେଟ୍ ଅନୁସାରେ ତ ଆହୁରି ପାଖାପାଖି ମାସେ ଅଛି । ମାତ୍ର ତା' ପୂର୍ବରୁ ହୋଇଯାଇପାରେ ବୋଲି ମଧ ତାଙ୍କର ଆଶଙ୍କା ଅଛି ।"

"ହୁଁଃ- ଆଗରୁ ହୋଇଯିବ । ତୋତେ ଦେଖିଲେ ତ କେହି କହିବ ନାହିଁ ଯେ ତୋ'ର ଆଠ ମାସ ଗର୍ଭ ଅଛି ବୋଲି ! ଏମିତି ଗର୍ଭର ଆକାର କମାଇବାକୁ କ'ଣ କିଛି ଔଷଧପତ୍ର ଖିଆଖିଇ କରିଛୁ କି ?"

"ନାଇଁ ବୋଉ ! ମୁଁ ବି ଡାକ୍ତରଙ୍କୁ ଏକଥା ପଚାରିଥିଲି । ସେ କହିଲେ ପ୍ରଥମ ଗର୍ଭରେ ଏମିତି କେତେ ଜଣଙ୍କର ହୁଏ ।"

"ପ୍ରଥମ ଗର୍ଭରେ ଏମିତି ହୁଏ—ଆମେ ସବୁ କ'ଣ ଛୁଆ ଜନ୍ମ କରି ନାହୁଁ ।"

"ସବୁ ଠିକ୍ ଠାକ୍ ବୋଲି ତ ଚେକ୍‌ଅପ୍‌ରୁ ଜଣାପଡୁଛି ।"

"ହଉ—ମୁଁ ବି ଠାକୁରଙ୍କୁ ଡାକୁଛି ସବୁ ଭଲରେ ଭଲରେ ହୋଇଯାଉ ।"

ସମ୍ଭାବ୍ୟ ପ୍ରସବ ତାରିଖ ଆହୁରି ପନ୍ଦରଦିନ ଥିଲା। ଦିନେ ରାତିରେ ହଠାତ୍ ଆରମ୍ଭ ହୋଇଗଲା ସ୍ମିତାଙ୍କର ପ୍ରସବ ବେଦନା । ଆମେ ତୁରନ୍ତ ହସ୍‌ପିଟାଲ ନେଇଗଲୁ । ରାତିସାରା ଲାଗିରହିଲା ଯନ୍ତ୍ରଣା, ରାତି ପାହିବାକୁ ଅଳ୍ପ ସମୟ ଥାଏ ହୋଇଗଲା ଡେଲିଭରି । ପ୍ରଥମ ପିତୃତ୍ୱର ଆନନ୍ଦରେ ଅଧୀର ହୋଇ ଲେବର୍ ରୁମ୍‌ରୁ ବାହାରି ଆସୁଥିବା ନର୍ସଜଣଙ୍କୁ ପଚାରିଲି କ'ଣ ହୋଇଛି ? ସେ ବିଶେଷ ଖୁସି ପ୍ରକଟ ନ କରି କହିଲେ, ପୁଅଟିଏ ହୋଇଛି ଯେ ହେଲେ ପର୍ବତର ମୂଷିକ ପ୍ରସବ ପରି । ଡାକ୍ତର ଟେଷ୍ଟ କରୁଛନ୍ତି ଯଦି ପ୍ରିମାଚ୍ୟୁର ଡେଲିଭରିପାଇଁ ଏମିତି ଛୋଟ ଶିଶୁ ଜନ୍ମ ହୋଇଥାଏ ତେବେ ତାକୁ ଇନ୍‌କ୍ୟୁବେଟର୍‌ରେ ରଖିବେ ।

ମୋର ଆଗ୍ରହରେ ଭଙ୍ଗା ପଡ଼ିଗଲା । ହଠାତ୍ ମୁଁ ଧୀରେ ଧୀରେ ଲେବର୍ ରୁମ୍ ପାଖକୁ ଗଲି । ମୋତେ ଦେଖି ଡାକ୍ତର ହାତଠାରି ନିର୍ଦ୍ଦେଶ ଦେଲେ ଭିତରକୁ ଯିବାପାଇଁ, ମୁଁ ଭିତରକୁ ଯିବାପରେ ସେ କହିଲେ- ମୁଁ ସନ୍ଦେହ କରୁଥିଲି ପ୍ରିମାଚ୍ୟୁର ବାର୍ଥ ପାଇଁ ଏମିତି ହୋଇଥାଇପାରେ ବୋଲି । ତେଣୁ ଚେକ୍‌ଅପ୍ କରୁଥିଲି । କିନ୍ତୁ ଏଇଟା ପ୍ରିମାଚ୍ୟୁର କେସ୍ ନୁହଁ, ପିଲାଟି ବାମନ ହୋଇ ଜନ୍ମ ଗ୍ରହଣ କରିଛି ।

ମୋ ପାଖରେ ଛିଡ଼ା ହୋଇଥିଲା ବୋଉ । ମୋତେ ହଲାଇ ଦେଇ ପଚାରିଲା- "କ'ଣ ହୋଇଛି, କ'ଣ ହୋଇଛି ?"

ମୁଁ କେବଳ ତିନୋଟି ଅକ୍ଷର ଉଚ୍ଚାରଣ କଲି- 'ବା-ମ-ନ' ।

# ଶାରୀ ଓ ମୂକପୁତ୍ରର କାହାଣୀ

ପୁଅ ହାଉଁ ହାଉଁ ହୋଇ ଚିତ୍କାର କଲା । ତା' ସ୍ୱରରେ ପଛକୁ ହଟୁ ନ ଥିଲା କଟାଶଟି । ଗୋଟିଏ ବାଡ଼ି ଉଠାଇ ତା' ଆଗରେ ଠିଆ ହୋଇ ଜୋର୍‌ରେ ହାଉଁ ହାଉଁ ହେଉଥିଲା ପୁଅ, ମାତ୍ର ସେ ନଛୋଡ଼ବନ୍ଧା ହୋଇ ସୁଯୋଗକୁ ଅପେକ୍ଷା କରୁଥିଲା । ସୁଯୋଗ ଉଣ୍ଡି ସେ ଯେମିତି ଶାରୀ ଉପରକୁ ଝାମ୍ପି ପଡ଼ିଛି, ପୁଅ ଶାରୀଟିକୁ ତା' କୋଳ ଭିତରେ ଲୁଚାଇ ଧରି ଚିତ୍କାର କଲା - ମାଆ, ମାଆ, ମାଆ ଆ... ।

ରାତି ଅଧରେ ଭୀମରାଜ ପକ୍ଷୀର ଡାକ ଶୁଣିଲା ଗାଆଁ ମୁଖିଆ । ବିଶ୍ୱାସ କରିପାରିଲା ନାହିଁ କାନକୁ । ଭଲ କରି ଶୁଣିବାପାଇଁ ପୁଣିଥରେ କାନ ପାରିଲା । ନା, ଇଏ ଭୀମରାଜ ପକ୍ଷୀର ଡାକ । ଅଶୁଭ, ଅଶୁଭ । ଡାକ ପକାଇଲା ସାହିସାରା । ବାଡ଼େଇଲା ତାଟିକବାଟ, ଉଠ ଉଠ । ନିଦ ମଳମଳ ଆଖି ଧରି ଖୋଲିଗଲା ସବୁ ତାଟିକବାଟ । ଘେରିଗଲା ବହୁ ପ୍ରଶ୍ନିଳ ଆଖି । କ'ଣ ହୋଇଛି ? ବାଘ ପଶି ଆସିଛି କି ଗାଆଁ ଭିତରକୁ ? ଉଠାଇ ନେଇଛି କି କାହାର ଛେଳି, ମେଣ୍ଢା ଅବା ଗାଈକୁ? ମୁଖିଆ ସମସ୍ତଙ୍କୁ ଚୁପ୍ ରହିବାକୁ ନିର୍ଦ୍ଦେଶ ଦେଇ କହିଲା— "ଶୁଣ, ଶୁଣ ଏ ଡାକକୁ ।"

ସମସ୍ତେ କାନପାରିଲେ ରାତିର ଅନ୍ଧାର ଓ ନୀରବତାକୁ ଚିରି ଭାସି ଆସୁଥିବା ସ୍ୱରପ୍ରତି ।

"ଶୁଣିପାରୁଛ ?"

ଆପାତତଃ ଯୁବକ ଅବସ୍ଥାରେ ଥିବା ଦୁଇ ଜଣ କହିଲେ— "ଶୁଣୁଛୁ ଯେ, ହେଲେ ଇଏ ବାଘ କିମ୍ବା ହାତୀର ଗର୍ଜନ ନୁହଁ, ଇଏ ଏକ ପକ୍ଷୀର ସ୍ୱର ।"

"ହଁ, ଇଏ ପକ୍ଷୀର ସ୍ୱର ।"

ଏ ଶବ୍ଦକୁ କାନ ପାରିଥିବା ବୟସ୍କ ଲୋକମାନେ ଭିତରେ ଭିତରେ ଭୀତତ୍ରସ୍ତ ହୋଇସାରିଥିଲେ । ସେମାନେ କହିଲେ— "ଇଏ କେବଳ ପକ୍ଷୀର ଡାକ ନୁହଁ, ଗାଆଁ ଉଜାଡ଼ିବାର ଡାକ । ଆମେ ଏଇନେ କ'ଣ କରିବା ମୁଖିଆ ? କ୍ଷେତରେ ପାଚିଛି ଧାନ, ଡଙ୍ଗରରେ ମକା, କାନ୍ଦୁଲ, ଏସବୁକୁ ଛାଡ଼ି କେମିତି.... ?"

"ଇଏ ତ ପହରିଆର ଭାଗ୍ୟଲିଖନ, କ୍ଷେତର ଧାନ, ଡଙ୍ଗରର ମକା, କାନ୍ଦୁଲକୁ ଲୋଭ କରି କ'ଣ ଜୀବନ ଦେବା କି ? ବଞ୍ଚିଥିଲେ ସିନା ଫସଲକୁ ଲୋଭ, ଯେବେ ଜୀବନ ନ ରହିବ, ତେବେ ?"

"କୁଆଡ଼େ ଯିବା ତା'ହେଲେ ?"

ଏଠି ଆସି ଗାଆଁ ବସାଇବାଟା କେତେ ବରଷ ହୋଇଛି ? ଏଠିକି ଆସି ରହିବା ବେଳେ ଆମେ କ'ଣ ଚିନ୍ତା କରିଥିଲେ ସେ କଥା ? ଗୋଡ଼ ଯୁଆଡ଼େ କଢ଼ାଇନେଲା ଏବଂ ଯେଉଁ ଜାଗା ଆପଣାର ଲାଗିଲା ସେଇଠି ବସିଯିବା । ଆଉ ଡେରି କରନା, ଯାଅ । ବାନ୍ଧିପକାଅ ଯେଝା ଯେଝା ଆସବାବପତ୍ର । ରାତି ନ ପାହୁଣୁ ଏଠି ଲଗାଇବାକୁ ପଡ଼ିବ ନିଆଁ ।

ସୁନାବେଡ଼ା ଅଭୟାରଣ୍ୟ ମଝିରେ ଲାଗିଛି ନିଆଁ । ପହରିଆମାନେ ଉଜାଡ଼ି ଦେଇଛନ୍ତି ଗାଆଁ । ଏ ଖବର ଆମ ଅଫିସ୍‌ରେ ପହଞ୍ଚିବାରୁ ଡି.ଏଫ୍. ଓ. ବଡ଼ ବିଚଳିତ ହୋଇ ଡକାଇ ପଠାଇଲେ ଆମ ସମସ୍ତଙ୍କୁ । ନିର୍ଦ୍ଦେଶ ଦେଲେ ତୁରନ୍ତ ଯାଇ ଦେଖ, ଗାଆଁକୁ ଜାଳି ଦେଇଛନ୍ତି ମାନେ ସେ ନିଆଁ ବ୍ୟାପିଯିବ ସାରା ଅଭୟାରଣ୍ୟକୁ । ପୁଣି ଗୋଟାଏ ଜାଗାରେ ଯାଇ ସେମାନେ ବସାଇବେ ଗାଆଁ । କାଟିବେ ଜଙ୍ଗଲ । ଛାରଖାର ହୋଇଯିବ ଏ ଅଭୟାରଣ୍ୟ ।

ମୋ ଉପରେ ଦାୟିତ୍ୱ ପଡ଼ିଲା କିଛି ଫରେଷ୍ଟର ଓ ଫରେଷ୍ଟଗାର୍ଡ଼ଙ୍କୁ ସାଥୀରେ ନେଇ ସେଠାରେ ପହଞ୍ଚିବାକୁ । ସେଠାରେ ପହଞ୍ଚିବା ସହଜ କାର୍ଯ୍ୟ ନ ଥିଲା । ଫରେଷ୍ଟ ରେଷ୍ଟ୍ ସେଡ୍ ଯାଏଁ ମାତ୍ର ଯାଇପାରିବ ଜିପ୍ । ସେଠାରୁ ଦଶ ବାର କିଲୋମିଟର ଦୂରତାକୁ ଜଙ୍ଗଲ, ଝରଣା ଓ ପାହାଡ଼ ଡେଇଁ ଅତିକ୍ରମ କଲେ ଯାଇ ପଡ଼ିବ ପହରିଆପଡ଼ା । ତେଣୁ ରୀତିମତ କ୍ୟାମ୍ପ ଆରେଞ୍ଜମେଣ୍ଟ କରି ଆମେ ବାହାରି ପଡ଼ିଲୁ ସେ ଗାଆଁ ଅଭିମୁଖେ ।

ପହରିଆପଡ଼ାରେ ପହଞ୍ଚିବାବେଳକୁ ବେଳ ରତରତ । ଜଳି ଯାଇଥିଲା ପୂରା ଗାଆଁଟି । ଗାଆଁ ପାଲଟି ଯାଇଥିଲା ଠାଏ ଠାଏ ଗଦା ହୋଇଥିବା ପାଉଁଶ ସ୍ତୁପରେ । ଆମେ ପାଉଁଶଗଦା ଉଖାରି ଦେଖିଲୁ ନିଆଁ ଅଛି କି ନାହିଁ । ଆମର ସୌଭାଗ୍ୟ ଯେ ପାଉଁଶଗଦାରେ ନିଆଁ ନ ଥିଲା କି ନିଆଁ ବ୍ୟାପି ନ ଥିଲା ପାଖ ଜଙ୍ଗଲକୁ । ପ୍ରଥମ ଦାୟିତ୍ୱରୁ ଅବ୍ୟାହତି ମିଳିବାରୁ ଆମେ ସ୍ୱସ୍ତିରେ ନିଃଶ୍ୱାସ ନେଲୁ । ସେମାନେ କୁଆଡ଼େ ଗଲେ ପରେ ଖୋଜିବା । ଏବେ ରାତ୍ର ରହଣିପାଇଁ ଟେଣ୍ଟର ବ୍ୟବସ୍ଥା କଲୁ ।

ସକାଳେ ଝରଣାକୁ ଯାଇ ନିତ୍ୟକର୍ମ ସାରି ଫେରିବାବେଳେ ଦେଖିଲି ଗଛରେ ବନ୍ଧା ଯାଇଥିବା ଫାଶରେ ଛନ୍ଦି ହୋଇ ରହିଛି ଚଢ଼େଇଟିଏ । ଗଛରେ ଚଢ଼ି ଫାଶ ଫିଟାଇ ଚଢ଼େଇଟିକୁ ଧରି ଦେଖିଲି ସେଇଟି ଗୋଟିଏ ଶାରୀ ଛୁଆ ।

ମୁଁ ଆମ ଟେଣ୍ଟ୍ ପାଖରେ ପହଞ୍ଚୁ ପହଞ୍ଚୁ ଆମର ଜଣେ ଫରେଷ୍ଟ ଗାର୍ଡ଼ ମୋ ହାତରେ ଶାରୀ ଛୁଆଟିକୁ ଦେଖି କହିଲା— "ଆପଣ ଏ ଶାରୀଟିକୁ କେଉଁଠୁ ଧରିଲେ ସାର୍ ! ଇଏ ତ ଏକ ବିରଳ ଜାତୀୟ ଶାରୀ !"

"ବିରଳ ଜାତୀୟ !" ମୁଁ ବିସ୍ମୟରେ ପଚାରିଲି ।

"ହଁ ସାର୍, ଏହି ଜାତୀୟ ଶାରୀ କଥା କହିବାରେ ମଣିଷଙ୍କୁ ଟପିଯାଏ । ୟାକୁ ବେଶି ଶିଖାଇବାକୁ ପଡ଼େନା । ଇଏ ଶୁଣି ଶୁଣି ସବୁ ଶିଖିଯାଏ ।"

"ତା'ହେଲେ ତ ବହୁତ ଭଲ କଥା । ମୋ ପୁଅକୁ ତ ଏବେ ଦୁଇମାସ ହୋଇଛି । ଇଏ ଆଉ ଗୋଟେ ସଦସ୍ୟ ଯୋଡ଼ା ହୋଇଯିବ ପରିବାରରେ । ଉଭୟ ଏକା ସାଙ୍ଗରେ କଥା କହିବା ଆରମ୍ଭ କରିବେ ।"

ଘରେ ପହଞ୍ଚିବା ପରେ ଏ ଶାରୀ ଛୁଆର ବିଶେଷତ୍ୱ ମୋ ସ୍ତ୍ରୀଙ୍କୁ କହିଲି । ସେ ଖୁସି ହୋଇ ତା' ପାଇଁ ଗୋଟେ ଭଲ ପଞ୍ଜୁରିର ବ୍ୟବସ୍ଥା କଲେ ।

ଦୋଳିରେ ଝୁଲୁଥିଲା ପୁଅ । ପଞ୍ଜୁରି ଭିତରେ ଶାରୀ । ପୁଅ ହାତ ଗୋଡ଼ ଛାଟି ଖେଳନାକୁ ଚାହିଁ ହାଉଁ ହାଉଁ ହେଉଥିଲା । ଶାରୀଟି ପଞ୍ଜୁରିରେ ତଳ ଉପର ହୋଇ ଖଣ୍ଡି ରାବ ଦେଉଥିଲା । ପୁଅ ପେଟେଇବା ଆରମ୍ଭ କଲା । ଶାରୀଟି ପର ହଲାଉଥିଲା ପଞ୍ଜୁରି ଭିତରେ ।

ପୁଅ ହାମୁଡ଼େଇବା ଆରମ୍ଭ କଲା, ଶାରୀଟି ଖଣ୍ଡି ଖଣ୍ଡି କଥା କହିଲା, ଶାରୀଟି ଯେଉଁଦିନ ଖଣ୍ଡି ଖଣ୍ଡି କଥା କହିଲା, ସେଦିନ ଆମେ ଖୁସି ହୋଇଗଲୁ । ମାତ୍ର ପର ମୁହୂର୍ତ୍ତରେ ସେ ଖୁସି ମିଳାଇଗଲା ଯେତେବେଳେ ଆମେ ଭାବିଲୁ ଆଠ ନଅ ମାସର ଶାରୀ ଛୁଆଟା ଯଦି କଥା କହିବା ଶିଖିପାରିଲା, ତେବେ ଆମ ପୁଅ ତ କିଛି ଶବ୍ଦ କହିପାରୁଥାଆନ୍ତା । ମାତ୍ର ଏହା ଭିତରେ ସେ କେବଳ ହାଉଁ ହାଉଁ ଶବ୍ଦ ବ୍ୟତୀତ ଆଉ ତ କିଛି ଶିଖିନି ।

ମନକୁ ବୁଝାଇଲୁ । ବହୁତ ପିଲା ବିଳମ୍ବରେ କଥା କହି ଶିଖିବାର ନଜିର ଅଛି, ହୁଏତ ପୁଅ ବିଳମ୍ବରେ କଥା କହିବ । ବର୍ଷେ ଗଲା, ପୁଅର ସେହି ଦଶା । ଦେଢ଼ ବର୍ଷ ଗଲା ତଥାପି ଖୋଲିଲାନି ପାଟି । ଅଥଚ଼ ଶାରୀର ପାଟିରେ ଏବେ ବାଜୁ ନ ଥିଲା ବାଟୁଳି । ବାପା, ମାଆଠାରୁ ଆରମ୍ଭ କରି ପିଅନ, ଚାକରଯାଏଁ ସମସ୍ତଙ୍କ ନାଆଁ ଥିଲା ତା' ତୁଣ୍ଡରେ । ଟି.ଭି.ର ବିଜ୍ଞାପନକୁ ବି ଶୁଣି ଶୁଣି ତାକୁ ଧୀରେ ଧୀରେ କହିବା ଆରମ୍ଭ କରିଦେଇଥିଲା । ଘରର କଲିଂ ବେଲ୍ ବାଜିବାକ୍ଷଣି ଡାକ ଛାଡୁଥିଲା ! ମାଆ ! କିଏ ଆସିଲେ ଦେଖ, ପୁଅ କାନ୍ଦିଲେ ଡାକୁଥିଲା, ମାଆ ! ବାବୁ

କାନ୍ଦୁଛନ୍ତି କିମ୍ବା ପୁଅ ମାଟି, ଗୋଡ଼ି ପାଟିରେ ପୂରାଇଲେ, ବାବୁ ଅସନା ହେଉଛନ୍ତି ବୋଲି ଡାକ ଛାଡୁଥିଲା ଶାରୀ । ଶାରୀର କଥା ଶୁଣି ଶୁଣି ଆମେ ଚିନ୍ତିତ ହୋଇପଡୁଥିଲୁ ପୁଅପାଇଁ । ତା'ର ଯଦି କିଛି ତ୍ରୁଟି ନ ଥାନ୍ତା ତା'ହେଲେ ଏତେ ଦିନ ଯାଏ ପାଟି ଖୋଲୁ ନ ଥାନ୍ତା କିପରି ? ଦେଢ଼ ବର୍ଷର ହେଲାଣି, କେବଳ ବିକଟାଳ ହାଉଁ ହାଉଁ ଶବ୍ଦ ବ୍ୟତୀତ ଆଉ କିଛି ଶବ୍ଦ ତା' ପାଟିରୁ ବାହାରୁନି କିପରି ?

ପୁଅକୁ ଧରି ପହଞ୍ଚିଲୁ ଡାକ୍ତରଙ୍କ ପାଖରେ । ସେ ସବୁ ପରୀକ୍ଷା ନିରୀକ୍ଷା କଲାପରେ କହିଲେ, କୌଣସି ଗଠନଗତ ତ୍ରୁଟି ନାହିଁ । କିଛି ପିଲାଙ୍କର ବହୁ ବିଳମ୍ବରେ ପାଟି ଖୋଲେ । ଏହାର ମଧ୍ୟ ସେମିତି ହୋଇପାରେ । ତେଣୁ ଧୈର୍ଯ୍ୟ ଧରି ଅପେକ୍ଷା କରନ୍ତୁ । ତେବେ ଚେଷ୍ଟା କରିବେ ତା' ସହ ବେଶି କଥାବାର୍ତ୍ତା କରିବାପାଇଁ ।

ଦୁଇବର୍ଷ ପୂରିଲା, ଫିଟିଲାନି ପୁଅର ପାଟି । ବରଂ ତା'ର ହାଉଁ ହାଉଁ ଶବ୍ଦଟା ଧୀରେ ଧୀରେ କର୍କଶ ରୂପ ଧାରଣ କରୁଥିଲା । ଆମେ ଆଶଙ୍କା କଲୁ ପୁଅ ମୂକ ହେବ । ଏଥର ଦେଖାଇଲୁ ବଡ଼ଡାକ୍ତର । ସେ ସମସ୍ତ ପରୀକ୍ଷା ପରେ କହିଲେ, ଆପଣଙ୍କ ପୁଅର ସ୍ୱରପେଟିକାରେ କୌଣସି ଗଠନଗତ ତ୍ରୁଟି ନାହିଁ। ସମସ୍ୟାଟା ରହିଛି ସ୍ନାୟୁଗତ । ଭଲ ହେବ ଯଦି ଆପଣ ଏଥିପାଇଁ କୌଣସି ସ୍ନାୟୁ ବିଶେଷଜ୍ଞଙ୍କ ପରାମର୍ଶ ନିଅନ୍ତି । ଏ ଦିଗରେ ଆମକୁ ସାହାଯ୍ୟ କରିବାପାଇଁ ସେ ଜଣେ ସ୍ନାୟୁ ବିଶେଷଜ୍ଞଙ୍କର ଠିକଣା ଦେଲେ ।

ତାଙ୍କ ପାଖରେ ପହଞ୍ଚିବା ପରେ 'ଦାସେ ଆଇଲେ ମୂଳରୁ ଗାଆ' ପରି ପୁଣି ଥରେ ଆରମ୍ଭ ହେଲା ସମସ୍ତ ପରୀକ୍ଷା ନିରୀକ୍ଷା । କିଛି ନୂଆ ପରୀକ୍ଷା ସହ ଯୋଡ଼ା ହେଲା ହେଡ୍ ସ୍କାନିଂ । ସବୁ ପରୀକ୍ଷା ସରିବା ପରେ ଡାକ୍ତର କହିଲେ— "ସ୍ୱିଚ୍ ମୋଡୁଲେସନ୍‌ପାଇଁ ବ୍ରେନ୍‌ରୁ ଯେଉଁ ନର୍ଭ କମାଣ୍ଡ କରୁଛି ତାହା ଇନାକ୍ଟିଭ୍ ହୋଇଯାଇଛି । ତାକୁ ଅପରେସନ୍ କରାଯାଇ ଆକ୍ଟିଭେଟ କରାଯାଇପାରେ । କିନ୍ତୁ ସେଥିରେ ଗୋଟିଏ ସମସ୍ୟା ରହିଛି ।"

"କି ସମସ୍ୟା ?"

"ଯଦି ଅପରେସନ୍ ସଫଳ ନ ହୁଏ, ତେବେ ଲାଭ ଅପେକ୍ଷା କ୍ଷତି ଅଧିକ ହେବ । ଆପଣମାନେ ଯଦି ସେ ରିକ୍‌ସ ନେବାକୁ ପ୍ରସ୍ତୁତ ହେବେ ତେବେ ମୁଁ ଅପରେସନ୍ କରିଦେଇପାରେ, କିନ୍ତୁ ଏବେ ନୁହେଁ, ଏହାର ବୟସ ବଢ଼ିବା ପରେ ।"

"କେତେ ବର୍ଷ ହେଲେ ?"

"ପିଲାକୁ ପାଞ୍ଚବର୍ଷ ହେଉ । ତେବେ ଏହା ଭିତରେ ଆପଣମାନେ ଚେଷ୍ଟା ଜାରି ରଖିଥାଆନ୍ତୁ । କୌଣସି ଚମତ୍କାରିତା ଘଟି ସେ ଯଦି କଥା କହିବା ଆରମ୍ଭ କଲା ତ ଭଲ କଥା ।"

ଆମ ମନ ବୁଝିବାପାଇଁ ଡାକ୍ତର ଏକଥା କହୁଥିଲେ, ଆମେ ଜାଣୁଥିଲୁ । କିଛି ଯେ ଚମତ୍କାରିତା ଘଟିବ - ଏ ବିଶ୍ୱାସ ଯଦିଓ ଆସୁ ନ ଥିଲା ତଥାପି ମନକୁ ବୁଝାଇ ଫେରିଲୁ । ଫେରିବା ପରେ ମୋର ସ୍ତ୍ରୀ ସଂପୂର୍ଣ୍ଣ ଈଶ୍ୱରଙ୍କ ଭରସାରେ ରହି ନାନା ଧର୍ମ କର୍ମରେ ମନ ଦେଲେ । ଘରେ ଅହରହ ଗୀତା, ଭାଗବତ, ଚଣ୍ଡୀପାଠ ଓ ଅନ୍ୟାନ୍ୟ ମନ୍ତ୍ର ଜପ ଚାଲିଲା । ଘରର ଏସବୁ ପୂଜାପାଠ, ହୋମ, ଯଜ୍ଞ ଆମକୁ ବାରମ୍ବାର ସ୍ମରଣ କରିବାକୁ ବାଧ୍ୟ କରୁଥିଲା ଯେ, ଏ ପୂଜା କୌଣସି ମହତ୍ତର ଲକ୍ଷ୍ୟ କିମ୍ବା ମୋକ୍ଷ ପ୍ରାପ୍ତି ପାଇଁ ଉଦ୍ଦିଷ୍ଟ ନୁହେଁ, ଏହା କେବଳ ପୁଅର ପାଟି ଖୋଲିବା ପାଇଁ ।

ଆମର ମନ୍ତ୍ର ଜପ ଓ ପୂଜାର ପ୍ରାଦୁର୍ଭାବ ଯେତେବେଳେ ଅଧିକ ବୃଦ୍ଧି ପାଏ, ବାଳୁତ ପୁତ୍ର ତାହାର ସ୍ୱଭାବସୁଲଭ ହାଉଁ ହାଉଁ ସ୍ୱରକୁ ଅଧିକ ଅଧିକ କରେ । ସେ ପୂଜା ପାଠରେ ନିଜକୁ ସାମିଲ କରି ବସିରହେ ପାଖରେ । ଏହା ଫଳରେ ମୋ ସ୍ତ୍ରୀଙ୍କ ମନରେ ଧୀରେ ଧୀରେ ଗୋଟେ ବିଶ୍ୱାସ ଜନ୍ମୁଥିଲା ଯେ ଦିନେନା ଦିନେ ଅକସ୍ମାତ୍ ଖୋଲିଯିବ ତା'ର ପାଟି, ସେ ଡାକ ଛାଡ଼ିବ ମାଆ-ମାଆ ।

ଆମର ଦୀର୍ଘଦିନର ପୂଜା ଫଳରେ ମଧ୍ୟ ଘଟୁ ନ ଥିଲା ସେମିତି କିଛି ଚମତ୍କାରିତା । କିନ୍ତୁ ଆମ ଅଲକ୍ଷ୍ୟରେ ଘଟୁଥିଲା ଆଉ ଏକ ଚମତ୍କାରିତା ଯାହାକୁ ଆମେ କେହି ନଜର ଦେଇ ନ ଥିଲୁ । ବିଷ୍ଣୁ ସହସ୍ର ନାମଠାରୁ, ଗୀତା, ଭାଗବତ ଓ ବିଭିନ୍ନ ମନ୍ତ୍ର, ଯାହା ଏଇ କିଛି ବର୍ଷ ହେଲା ପଢ଼ା ଚାଲିଥିଲା ଘରେ, ତାକୁ ଶାରୀଟି ପ୍ରାୟ ମୁଖସ୍ଥ କରିସାରିଥିଲା । ଆମର ନିତିଦିନିଆ କାମପାଇଁ ଯେତେବେଳେ ବନ୍ଦ ହୋଇଯାଏ ମନ୍ତ୍ରପାଠ, ସେ ଆରମ୍ଭ କରିଦେଉଥିଲା ତା'ର ମନ୍ତ୍ରପାଠ । ସଂସ୍କୃତ ଶବ୍ଦର ଏତେ ଶୁଦ୍ଧ ଉଚ୍ଚାରଣ ପୁଣି ସାମାନ୍ୟ ଏକ ପକ୍ଷୀ ମୁହଁରେ ଶୁଣି ଆମେ ଆଶ୍ଚର୍ଯ୍ୟ ହେଉଥିଲୁ । ମୁଁ ତ ମନେ ମନେ ଭାବୁଥିଲି ସେ ଫରେଷ୍ଟର କହିଥିବା କଥା ସତ, ଇଏ ଏକ ବିଚିତ୍ର ଓ ବିରଳ ପକ୍ଷୀ ।

ସିନ୍ଦୂରା ଫାଟିବା ପୂର୍ବରୁ ଶାରୀ ଡାକ ଛାଡ଼ିବ—ମୁନ୍ନା ଉଠ, ସକାଳ ହେଲା । ତା'ର ଡାକ ଶୁଣି ପୁଅ ଧୀରେ କରି ଉଠିଯାଏ ତା' ପଞ୍ଜୁରି ପାଖକୁ । ଶାରୀ କହିବ, କୁହ ଓଁ । ପୁଅ ଚେଷ୍ଟା କରୁଥିବ ବାରମ୍ବାର । ମାତ୍ରେ ସବୁବେଳ ପରି ସେଇ ଗୋଟିଏ

ଶବ୍ଦ ହିଁ ବାହାରୁଥିବ ତା' ପାଟିରୁ, ହାଉଁ ହାଉଁ । ପୁଅ ତା'ର ପଞ୍ଜୁରିର ଦ୍ୱାର ଖୋଲିଦେବ । ସେ ଉଠି ଆସି ତା' କାନ୍ଧରେ ବସିଯାଇ କହିବ, କୁହ ଓଁ । ସେ ଓଁ-ଓଁ କହି ଚାଲିଥିବ ଅଥଚ ପୁଅ ଓଲଟାଇ ପାରୁ ନ ଥିବ ତା'ର ଜିଭକୁ । ସେ କେବଳ ଗେହ୍ଲା କରୁଥିବ ଶାରୀଟିକୁ ପରମ ଆତ୍ମୀୟତାରେ । ଚାହୁଁଥିବ ତା'ର କଥାକୁହା ଥଣ୍ଟକୁ ଗୋଟେ ବିସ୍ମୟ ଭାବ ନେଇ ।

ପୁଅ ଯଦିଓ କଥା କହିପାରୁ ନ ଥିଲା, ତଥାପି ଅନ୍ୟ ସବୁ ସ୍ୱାଭାବିକ ପିଲାଙ୍କ ପରି ତା'ର ଅଝଟ ପଣ ଥିଲା । ସବୁଠୁ ବେଶି ଅଝଟ ତା'ର ଥିଲା ଖାଇବା ସମୟଟା । କିନ୍ତୁ ଶାରୀ ପାଖରେ ବସାଇ ଖୁଆଇବା ବେଳେ ତା'ର ଅଝଟ କମି ଯାଉଥିଲା । ଶାରୀ ପାଖରେ କିଛି ବୁଟ ଭିଜା, ମଟରଛୁଇଁ କିମ୍ବା ଫଳଟିଏ ରଖିଦେଲେ, ସେ ତା'ର ଖାଇବାକୁ ଦେଖି ଦେଖି ବିନା ଅଝଟରେ ଖାଇ ନେଉଥିଲା ।

ପୁଅ କଥା କହିପାରୁ ନ ଥିଲା । ଏଥିପାଇଁ ବନ୍ଧୁବାନ୍ଧବ, ଆତ୍ମୀୟସ୍ୱଜନଙ୍କ ମନରେ ଥିଲା ଦୁଃଖ । ତେଣୁ ଲାଗିରହିଥିଲା ଏମାନଙ୍କ ଭିଡ଼ ଆମ ଘରେ । ପୁଅ ପାଇଁ ସେମାନେ ଆମକୁ ସମବେଦନା ଜଣାଇବାର ଠିକ୍ ପରେ ପରେ ଆଗ୍ରହ ପ୍ରକାଶ କରୁଥିଲେ ଶାରୀର କଥା ଶୁଣିବାପାଇଁ । ତା' କଥା ଶୁଣି ସେମାନେ ଏମିତି ତନ୍ମୟ ଓ ଆଶ୍ଚର୍ଯ୍ୟ ହୋଇଯାଉଥିଲେ ଯେ ଫେରିବା ବେଳଯାଏଁ କେବଳ ପ୍ରଶଂସା କରୁଥିଲେ ଶାରୀର କଥା କହିବାର ଶକ୍ତିକୁ । ଶାରୀର କଥା ଶୁଣିବା ପରେ ସେମାନେ ଯେଉଁ ଉଲ୍ଲାସ ଭାବ ଦେଖାନ୍ତି ସେଥିରେ କୁଆଡ଼େ ହଜିଯାଏ ସେମାନଙ୍କର ଆସିବାର ଅସଲ ଉଦ୍ଦେଶ୍ୟ । ସେମାନେ ଫେରିଯିବା ପରେ ଅଧିକ ବିମର୍ଷ ହୋଇପଡ଼ନ୍ତି ମୋ ସ୍ତ୍ରୀ । ରାଗ ତମ ତମ ହୋଇ ପ୍ରଶ୍ନ କରନ୍ତି, ''କାହିଁକି ଆସିଥିଲେ ଏମାନେ, ପୁଅର ମୂକପଣପାଇଁ ସମବେଦନା ଜଣାଇବାପାଇଁ ନା ଶାରୀର କଥା ଶୁଣିବାପାଇଁ ?''

ଧୀରେ ଧୀରେ ଏଇ ଛୋଟିଆ ସହରଟିରେ ଗୋଟିଏ ଚର୍ଚ୍ଚାର ବିଷୟ ହୋଇଯାଇଥିଲା ଶାରୀ । ମୋର ପରିଚୟରେ ମଧ୍ୟ ଯୋଡ଼ା ହୋଇଯାଇଥିଲା, ଶାରୀ ବାଲା ରେଞ୍ଜର୍ । ମୁଁ ଯେଉଁଠିକୁ ଯାଉଥିଲି ଯେମିତି ହେଲେ କେଉଁବାଗରେ ପଡ଼ିଯାଏ ଶାରୀ କଥା । ମୁଁ ତାକୁ କେଉଁଠୁ କିଣିଥିଲି, କେତେ ଟଙ୍କାରେ କିଣିଥିଲି ଏବଂ ଏହି ଭେରାଇଟିର ଶାରୀ କେଉଁଠି ମିଳିବ ଇତ୍ୟାଦି ଇତ୍ୟାଦି । କେତେକ ତ କହୁଥିଲେ ଶାରୀ କଥା କହେ ଶୁଣିଥିଲୁ, ଦେଖିଥିଲୁ ମଧ୍ୟ । ସେସବୁ ସାଧାରଣ

ପଦେ ଦୁଇପଦ କଥା- ରାମ ରାମ, ଚକ୍ରଧର, ପକ୍ଷୀ ଜନ୍ମଗୁ ପାରି କର । ଅତି ବେଶିରେ ପାଳିଥିବା ଲୋକର ପିଲାମାନଙ୍କର ନାଆଁ ଧରି ଡାକିବା ଇତ୍ୟାଦି । ମାତ୍ର ଇଏ ତ ଅଦ୍ଭୁତ ଶାରୀ । ବିଷ୍ଣୁ ସହସ୍ର ନାମଠାରୁ ଗୀତା, ଭାଗବତ ଯାଏ ସବୁ ତୁଣ୍ଡରେ । ଆପଣ ତାକୁ ଏସବୁ ଶିଖାଇଲେ ନା ସିଏ ଆପେ ଆପେ ଶିଖିଗଲା ?

— ଆପେ ଆପେ ।

— ଆପେ ଆପେ ! ଇଏ ତ ନିଶ୍ଚୟ ଶୁକମୁନିଙ୍କୁ ଦିବ୍ୟ ଜ୍ଞାନ ଦେଇଥିବା ଶାରୀର ବଂଶଧର ହୋଇଥିବ । ଯାହାହେଉ ଏଇଟାକୁ ଆପଣଙ୍କ ଭାଗ୍ୟ କହିବ, ଏମିତିକା ଶାରୀଟିଏ ପାଇଗଲେ ।

ଏପଟେ ପୁଅର ବାକ୍‌ହୀନତା ଓ ସେପଟେ ଶାରୀର ବାକ୍‌ପଟୁତା । ତା'ର ପ୍ରଶଂସା ଶୁଣି ଶୁଣି ତା' ପ୍ରତି ମୋର ଜନ୍ମୁଥିଲା ବିଦ୍ୱେଷ ଓ ମୋ ସ୍ତ୍ରୀଙ୍କର ଈର୍ଷା । ବେଳେବେଳେ ସେ ତା'ର ମାଆ, ମାଆ, ଡାକରେ ଅତିଷ୍ଠ ହୋଇ କହିପକାନ୍ତି, "ବନ୍ଦ କର, ବନ୍ଦ କର ସେ ଡାକ । ଯା' ମୁହଁରୁ ମାଆ ଡାକ ଶୁଣିବା କଥା ତ ଶୁଣିପାରୁନି, ଆଉ ଇଏ ଡାକିଲା, ମାଆ-ମାଆ ! ମୁଁ କ'ଣ ଅଣ୍ଡା ଫୁଟେଇ ତୋତେ ଜନ୍ମ କରିଥିଲି ?"

ମୁଁ ଜାଣିପାରେ ତାଙ୍କର କ୍ରୋଧର କାରଣ । ତାଙ୍କୁ ବୁଝାଏ ତା' ଉପରେ ଅଯଥାରେ ରାଗି ଲାଭ କ'ଣ ? ଏଇଟା ଆମର ବିମର୍ଷ ଭାଗ୍ୟ ବୋଲି ଧରିନିଅ ।

ମୋ ସ୍ତ୍ରୀ ତାଙ୍କ କ୍ରୋଧ ପ୍ରଶମିତ କରିବା ପରିବର୍ତ୍ତେ କହନ୍ତି, ମୋର ତ ଧାରଣା ହେଉଛି ମୋ ପୁଅ ମୂକହେବା ପାଇଁ ଏ ଶାରୀ ଦାୟୀ । ଇଏ ନିଶ୍ଚୟ ଏକ ମାୟାବୀ ଶାରୀ । ଚୋରାଇ ନେଇଛି ମୋ ପୁଅର କଥା କହିବା ଶକ୍ତିକୁ । ନଚେତ୍ ଶାରୀଟିଏ ହୋଇ ପାଟିରେ ବାଟୁଳି ବାଜୁନି, ଏତେ ମନ୍ତ୍ର, ଶ୍ଳୋକ କେମିତି ଗାଇଯାଉଛି ?

ମୁଁ ଗମ୍ଭୀର ହୋଇ ଚିନ୍ତା କଲି, ସତ ବି ହୋଇପାରିଥାଏ ଏକଥା । ଭଗବାନ୍ ଗୋଟିଏ ପଟରେ ଅଯାଚିତ ଭାବେ କିଛି ଦେଲେ ଅନ୍ୟ ପଟରେ କିଛି ନେଇ ଯାଆନ୍ତି । ହେଲେ ମନର ଭାବ ମନରେ ରଖି ଚୁପ୍ ରହିଲି ।

ପୁଅ ଯେତିକି ଯେତିକି ବଡ଼ ହେଉଥିଲା ତା'ର ଶବ୍ଦ ସ୍ଫୁରଣର ବୈକଲ୍ୟ ଭାବ ଓ ବୀଭତ୍ସ ସ୍ୱର ସେତିକି ଅଧିକ ଅଧିକ ବଢୁଥିଲା । ତା' ମନୋଭାବର ସମସ୍ତ ପ୍ରକାଶ ହିଁ ଗୋଟିଏ ଶବ୍ଦରେ ସୀମିତ ରହୁଥିଲା, ହାଉଁ ହାଉଁ । ତା' ମନୋଭାବକୁ ପ୍ରକାଶ କରି ନ ପାରି ସେ ଯେତିକି ଦୁଃଖିତ ହେଉ ନ ଥିଲା, ତା' ଠାରୁ ଅଧିକ

ହେଉଥିଲୁ ଆମେ । ସବୁବେଳେ ଗୋଟିଏ ଚିନ୍ତା ଆମକୁ ଘାରି ରଖୁଥିଲା, ଆଉ ଅଳ୍ପଦିନ ପରେ ପୂରିଯିବ ପାଞ୍ଚବର୍ଷ । ଏବେ ଅପରେସନ୍ କରାଇବାର ସମୟ ଆସିଗଲାଣି । ଅପରେସନ୍ କଥା ଭାବିବାକ୍ଷଣି ଆମେ ବେଶି ଚିନ୍ତିତ ହୋଇପଡୁଥିଲୁ ଯେ ଯଦି ଅପରେସନ୍ ସକ୍‌ସେସ୍ ନ ହୁଏ, ତେବେ ? କ'ଣ କହିଥିଲେ ଡାକ୍ତର, ଲାଭ ଅପେକ୍ଷା କ୍ଷତିଟା ଅଧିକ ହେବ । କ'ଣ ହୋଇପାରେ ସେ କ୍ଷତିଟା ? ପୁଅର ଜୀବନ ଉପରେ ବିପଦ କି ? ଯଦି ଜୀବନ ଉପରେ ବିପଦ, ତେବେ କ'ଣ ଲାଭ ସେ ଅପରେସନ୍ କରାଇ ? କଥା କହିପାରୁ କି ନ ପାରୁ, ବଞ୍ଚିକି ରହୁ । ପାଠ ଶାଠ ପଢ଼ି ପାରିବନି ତ ନ ପଢୁ । ଏତେ ସଂପତ୍ତି ଅଛି କ'ଣ ଚଳିଯିବନି ?

ଆମେ ସ୍ୱାମୀ ସ୍ତ୍ରୀ ଉଭୟେ ନିଷ୍ପତ୍ତି ନେଲୁ ଅପରେସନ୍ କରାଇବାର ରିସ୍କଟା ଜାଣି ଯଦି ଅପରେସନ୍ କରାଉଛୁ ଆଉ ଅପରେସନ୍ ପରେ ଯଦି କିଛି ହୋଇଗଲା, ତେବେ ଆମେ ନିଜକୁ କ୍ଷମା କରିପାରିବୁ ତ ? ନା, ବରଂ ଏମିତି ଥାଉ, କଥା କହି ନ ପାରିଲା ନାହିଁ ।

ମନ୍ତ୍ର ତନ୍ତ୍ର ସହ ମୋ ସ୍ତ୍ରୀ ଏବେ ବେଶି ବେଶି ସାହାରା ନେଉଥିଲେ ସାଧୁ, ସନ୍ଥ ଓ ସନ୍ନ୍ୟାସୀମାନଙ୍କର । ସେ କେଉଁଠୁ ଗୋଟେ ଖବର ସଂଗ୍ରହ କଲେ ଯେ ଜଣେ ସିଦ୍ଧ ସନ୍ନ୍ୟାସୀ ରହୁଛନ୍ତି ଋଷିକେଶର ଏକ ଗୁମ୍ଫାରେ । ତାଙ୍କର କର ସ୍ପର୍ଶରେ ସବୁ ରୋଗ, ଶୋକ ଓ ଦୁଃଖ ଦୂର ହୋଇଯାଉଛି । ସେ ମୋତେ ବାଧ୍ୟ କଲେ ତାଙ୍କ ପାଖକୁ ଯିବାପାଇଁ । ପୁଅକୁ ସାଙ୍ଗରେ ଧରି ବହୁ କଷ୍ଟରେ ଯାଇ ଆମେ ତାଙ୍କ ପାଖରେ ପହଞ୍ଚିଲୁ । ପହଞ୍ଚିଲାବେଳକୁ ସେ ଥିଲେ ଧ୍ୟାନସ୍ଥ । ଆମକୁ ଅପେକ୍ଷା କରିବାକୁ ପଡ଼ିଲା ସାରାଦିନ ସାରାରାତି । ତାଙ୍କର ଜଣେ ଶିଷ୍ୟ ଆମକୁ କହିଲେ— "କାଲି ସକାଳୁ ବାବାଙ୍କର ଧ୍ୟାନଭଙ୍ଗ ପରେ ସେ ପ୍ରଥମେ ଯିବେ ଗଙ୍ଗାନଦୀକୁ । ସେଠାରୁ ସ୍ନାନସାରି ଫେରିବା ସମୟ ହିଁ ହେଉଛି ପ୍ରକୃଷ୍ଟ ସମୟ, ନିଜର ସମସ୍ୟା ଉପସ୍ଥାପନ କରିବାର । ଆପଣମାନେ କାଲି ସକାଳୁ ତାଙ୍କୁ ଅନୁସରଣ କରିବେ । ମାତ୍ର ଗୋଟିଏ କଥା ମନେ ରଖିବେ, ସେ କିଛି ନ ପଚାରିବା ଯାଏଁ ତାଙ୍କ ସହ କୌଣସି କଥାବାର୍ତ୍ତା କରିବାକୁ ଚେଷ୍ଟା କରିବେ ନାହିଁ ।"

ପରଦିନ ପ୍ରଭାତରେ ବାବାଙ୍କର ଧ୍ୟାନଭଙ୍ଗ ହେଲା । ସେ ଧ୍ୟାନସ୍ଥ ମୁଦ୍ରାରୁ ଉଠି ସିଧା ଚାଲିଲେ ଗଙ୍ଗାତୀରକୁ । ଏକ ନିରାପଦ ଦୂରତାରେ ଆମେ ତାଙ୍କୁ ଅନୁସରଣ କଲୁ । ବାବା ସ୍ନାନତର୍ପଣ ସାରିବା ପରେ ଚାଲିଲେ ଆଶ୍ରମ ଅଭିମୁଖେ । ଆମେ ପୁଣି ତାଙ୍କ ପଛେ ପଛେ ଚାଲିଲୁ । ଆମର ଉପସ୍ଥିତି ବାବା ଉପଲବ୍ଧି କରିସାରିଥିଲେ । ହଠାତ୍ ଏକ ବୃକ୍ଷ ମୂଳରେ ସେ ଠିଆ ହୋଇଗଲେ । ନିଜ

କମଣ୍ଡଳୁରୁ ସାମାନ୍ୟ ଜଳ ବୃକ୍ଷ ମୂଳରେ ଦେଇ ତା' ଉଦ୍ଦେଶ୍ୟରେ କହିଲେ, "ଶବ୍ଦମୟ ବିଶ୍ୱରେ ନିଜକୁ ପ୍ରକାଶ କରିବାପାଇଁ ତମେ ଶବ୍ଦର ସାହାରା ନେଉଛ କି ?"

ଆମେ କେବଳ ଆଶ୍ଚର୍ଯ୍ୟ ହୋଇ ତାଙ୍କ କଥା ଶୁଣିଥିଲୁ । ଗୋଟିଏ ମୁହୂର୍ତ୍ତ ପରେ ସେ ତାଙ୍କ ଯାତ୍ରା ଆରମ୍ଭ କଲେ । ଏ ରହସ୍ୟର ଉତ୍ତର ପଚାରିବାର ସାହସ କରି ନ ପାରି ଆମେ କେବଳ ତାଙ୍କ ପଛେ ପଛେ ଚାଲିଥିଲୁ । ସେ ତାଙ୍କର ଯାତ୍ରା ନ ରୋକି ଆମ ଉଦ୍ଦେଶ୍ୟରେ କହିଲେ, "ଅନୁସରଣର ମୂଲ୍ୟ କିଛି ନାହିଁ, ଅନୁଧ୍ୟାନ କର । ବ୍ରହ୍ମ ହିଁ ଶବ୍ଦ । ବ୍ରହ୍ମକୁ ନ ଚିହ୍ନି ଶବ୍ଦପାଇଁ ଏ ବ୍ୟାକୁଳତା କାହିଁକି ?"

ତାଙ୍କ ସ୍ୱରରେ କି ଶକ୍ତି ଥିଲା କେଜାଣି, ଆମେ ଆଉ ତାଙ୍କୁ ଅନୁସରଣ କରିବାର ସାହସ କରିପାରିଲୁ ନାହିଁ ।

ଘରକୁ ଫେରିବା ପରେ ମୁଁ ଚିନ୍ତା କଲି, ଏ ପୃଥିବୀରେ କୋଟି କୋଟି ପ୍ରକାର ଜୀବ ଅଛନ୍ତି । ମଣିଷକୁ ଛାଡ଼ିଦେଲେ ଆଉ ତ କେହି କଥା କହିପାରୁ ନାହାନ୍ତି। ଆଉ କେହି କଥା କହି ନ ପାରିବା ଫଳରେ ତ ଅଟକିଯାଇନି ପୃଥ୍ୱୀ, କ୍ଷୁଣ୍ଣ ହେଉନି ଏହାର ମାଧୁର୍ଯ୍ୟ, ବ୍ୟାହତ ହେଉନି ତ ଭାବର ଆଦାନ ପ୍ରଦାନ କିମ୍ବା ବ୍ୟାହତ ହେଉନି ତ ପୃଥିବୀର ଭାବମୟତା । ପ୍ରକୃତି ଭିତରେ ଥିବା ନିଃଶବ୍ଦର ଆବେଦନ ଯେତିକି ଗଭୀର, ଯଦି ଗଛ-ଲତା, ବଣ-ପାହାଡ଼, ନଦ-ନଦୀ, ଜୀବଜନ୍ତୁ ସମସ୍ତେ କଥା କହିପାରୁଥାନ୍ତେ ତେବେ କ'ଣ ରହିପାରିଥାଆନ୍ତା ପୃଥିବୀର ଶାନ୍ତ, ସ୍ନିଗ୍ଧ ଓ ପବିତ୍ର ନୀରବତା ? ମଣିଷ ବ୍ୟତୀତ ଈଶ୍ୱର ସବୁଠି ଶବ୍ଦ ଦେଇଛନ୍ତି ଅଥଚ ମୁଖର କରିପାରି ନାହାନ୍ତି କାହାକୁ । ସେଥିପାଇଁ ତ ମାନସିକ ଶାନ୍ତି ପାଇବା ପାଇଁ ମଣିଷ ଖୋଜେ ନିରବତା, ଖୋଜେ ପ୍ରକୃତିର କୋଳ । ମନେ ପକାଇଲି, ସେହି ବୃକ୍ଷକୁ ନିମିତ୍ତ କରି ଆମ ଉଦ୍ଦେଶ୍ୟରେ ସନ୍ନ୍ୟାସୀ କହିଥିବା କଥାକୁ - ଶବ୍ଦମୟ ବିଶ୍ୱରେ ନିଜକୁ ପ୍ରକାଶ କରିବାପାଇଁ ତମେ ଶବ୍ଦର ସାହାରା ନେଉଛ କି ? ଧୀରେ ଧୀରେ ଉନ୍ମୋଚିତ ହେଉଥିଲା ସନ୍ନ୍ୟାସୀଙ୍କ କଥାର ରହସ୍ୟ । ମୋତେ ଲାଗିଲା ମୁଁ ଏତେ ଦିନ ଯାଏ ପୁଅର ମୂକପଣ ନେଇ ମିଥ୍ୟାରେ ଭ୍ରମୁଥିଲି । ମୋର ତା' ଓଠର ଶବ୍ଦକୁ ନୁହଁ, ତା' ମୁହଁର ଭାବକୁ ଚିହ୍ନିବାର ଥିଲା ।

ଆଶ୍ରମରୁ ଫେରିବା ପରେ ମୋ ସ୍ତ୍ରୀଙ୍କର ମନୋଭାବର ମଧ୍ୟ ଯଥେଷ୍ଟ ପରିବର୍ତ୍ତନ ଘଟିଥିଲା । ଲାଗୁଥିଲା ସେ ଯେମିତି ତାଙ୍କର ସମସ୍ୟାର ସମାଧାନ ଖୋଜି ପାଇଯାଇଛନ୍ତି । ଆଗଭଳି ସେ ଶାରୀଟି ପ୍ରତିଟି ତାଙ୍କର ଅସୂୟା ଭାବ ଦେଖାଉ ନ ଥିଲେ । ବରଂ ଶାରୀର ଯତ୍ନ ନେବାରେ ସେ ଅଧିକ ତତ୍ପର ହୋଇ

ଉଠିଥିଲେ । ନିଜେ ଘରର କାମ କଲାବେଳେ ଶାରୀକୁ କହୁଥିବେ, ଗାଆ ଭାଗବତ କିମ୍ବା ବିଷ୍ଣୁସହସ୍ର ନାମ । ସନ୍ଧ୍ୟା ଆରତି ସମୟରେ ପୁଅକୁ ପାଖରେ ବସାଇ ଶାରୀକୁ କହିବେ ଗାଆ— ଜୟ ଜଗଦୀଶ ହରେ ।

ଦିନେ ସକାଳୁ ଘର ଅଗଣାରେ ଥିବା ପାଣି ଟ୍ୟାପ୍ ପାଖରେ ଶାରୀର ପଞ୍ଜୁରିକୁ ସଫା କରି ତାକୁ ଗାଧୋଇଦେଲେ । ପୁଅ ବି ଏ କାମରେ ସାହାଯ୍ୟ କରୁଥିଲା ତାଙ୍କୁ । ଗାଧୋଇ ସାରିବା ପରେ ପରେ ପାଣି ଲାଗି ଶାରୀଟି ପୂରା ସାଙ୍କୁଡ଼ି ଯାଇଥାଏ । ସେ ଉଠି ଆସିଲେ ଘରକୁ ଗୋଟେ ଶୁଖିଲା କପଡ଼ା ନେଇ ତା'ର ପରକୁ ପୋଛି ଦେବାପାଇଁ । ଏହି ସମୟରେ ଗୋଟେ କଳା କଟାଶ କେଜାଣି କୁଆଡ଼େ ଥିଲା, ଛପି ଛପି ଆସି ଝାମ୍ପ ଦେବାକୁ ବସିଥିଲା ଶାରୀଟି ଉପରେ । ପୁଅ ହାଉଁ ହାଉଁ ହୋଇ ଚିତ୍କାର କଲା । ତା' ସ୍ୱରରେ ପଛକୁ ହଟୁ ନ ଥିଲା କଟାଶଟି । ଗୋଟିଏ ବାଡ଼ି ଉଠାଇ ତା' ଆଗରେ ଠିଆହୋଇ ଜୋର୍‌ରେ ହାଉଁ ହାଉଁ ହେଉଥିଲା ପୁଅ, ମାତ୍ର ସେ ନହ୍ନୋଡ଼ବନ୍ଦା ହୋଇ ସୁଯୋଗକୁ ଅପେକ୍ଷା କରୁଥିଲା । ସୁଯୋଗ ଉଣ୍ଡି ସେ ଯେମିତି ଶାରୀ ଉପରକୁ ଝାମ୍ପିପଡ଼ିଛି, ପୁଅ ଶାରୀଟିକୁ ତା' କୋଳ ଭିତରେ ଲୁଚାଇ ଧରି ଚିତ୍କାର କଲା— 'ମାଆ, ମାଆ, ମାଆ ଆ... ।'

# କୋମଳ ସନ୍ତ୍ରାସ

ଗତିଶୀଳତା ହିଁ ଜୀବନ । ଗତିଶୀଳ ଜୀବନର ବେଗ ଯେତିକି ଯେତିକି ବଢ଼େ, ବେଗ ସହ ତାଳ ଦେଇ ଠିକ୍ ସେତିକି ସେତିକି କମିଯାଏ ଜୀବନର ଆବେଗ । ସଂସାରର ସଂଗ୍ରାମ କ୍ଷେତ୍ରରେ ସୁଖ-ଦୁଃଖ ପରି ଦିଶୁଥିବା ଭୋଗବାଦୀ ବିଳାସ-ଅନ୍ୱେଷାର ପଥର ତଳେ କେତେବେଳେ ଚାପି ହୋଇଯାଆନ୍ତି ସ୍ମୃତିର କୋମଳ ଗାନ୍ଧାର, ନିଜକୁ ବି ଜଣାପଡ଼େନା । ଆଉ କେତେକ ସ୍ମୃତି ଏମିତି ଥାଆନ୍ତି ଯେ ଯେତେ ଚାପି ହୋଇରହିଲେ ବି ବେଳେ ବେଳେ କଇଁଛ ପରି ମୁଣ୍ଡଟି କାଢ଼ନ୍ତି । ମୁଣ୍ଡ କାଢ଼ିବା ସମୟରେ ସେସବୁ ଲାଗନ୍ତି ଗୋଟେ ଗୋଟେ ଉଦ୍‌ଭଟ ସ୍ୱପ୍ନ ପରି । ଅଥଚ ସେହି ଉଦ୍‌ଭଟ ସ୍ୱପ୍ନ ସବୁ ମୋତେ ସ୍ମୃତି-ସିକ୍ତ କରି ଆତ୍ମାମାତ୍ମା କରନ୍ତି, ରୋମାଞ୍ଚିତ କରାନ୍ତି; ଯଦିଓ ମୁଁ ଭଲଭାବରେ ଜାଣିଥାଏ ଏମିତି ଏକ ସ୍ୱପ୍ନର ସ୍ଥିତି କେବଳ ସ୍ୱପ୍ନରେ ହିଁ ସମ୍ଭବ । ତଥାପି ସେ ସ୍ୱପ୍ନଟି ଲାଗେ ଭାରି ଆପଣାର-ଆପଣାର ଏବଂ ଜଳଛବି ପରି ଝଲସାଏ ଅତୀତକୁ ।

ସୁକନ୍ୟା— ଏକ ମଧୁର ଉଚ୍ଚାରଣ, ଏକ ମଧୁର ସ୍ମୃତି । ଖରାଦିନ ପରି ଖାଁ-ଖାଁ ଲାଗୁଥିବା ଜୀବନରେ ବହିଆଣେ ଝଲକାଏ ସୁଲୁସୁଲିଆ ପବନ । ସୁକନ୍ୟାକୁ ନେଇ ମୋ ଭିତରେ ଗୋପନରେ ସାଇତା ହୋଇଥିବା ଦୁଃଖଦ ଅତୀତଟି ଧୀରେ ଧୀରେ ରୂପାନ୍ତରିତ ହୋଇଯାଏ ଏକ ରୋମାଞ୍ଚକର ସ୍ମୃତିରେ ।

ମୋ ସାନଭାଇର ଜଳଉଦର ରୋଗ ଥିଲା । ଅବଶ୍ୟ ତାକୁ ଜଳଉଦର ହୋଇଛି ବୋଲି ନାନା ପରୀକ୍ଷାନିରୀକ୍ଷା ପରେ ଆମେ ବହୁ ପଛରେ ଜାଣିଲୁ । ଏପଟ ସେପଟ କରି ଡାକ୍ତର ଦେଖା ଓ ଔଷଧ ଦେବା ଚାଲିଥାଏ । ପ୍ରତିଦିନ ଜଣେ କମ୍ପାଉଣ୍ଡର ଆସି ଆମ ଘରେ ଇଞ୍ଜେକ୍‌ସନ୍ ଦେଇଯାଆନ୍ତି । ଦିନେ ସନ୍ଧ୍ୟାରେ ସିଏ ଆସି ଇଞ୍ଜେକ୍‌ସନ୍ ଦେଇ ଚାଲିଯିବା ପରେ ବିଛଣାରେ ଶୋଇପଡ଼ିଲା ସାନଭାଇ । ରୋଗଜନିତ ଦୁର୍ବଳତାପାଇଁ ସେ ଶୋଇପଡ଼ିଛି ବୋଲି ଆମ ସମସ୍ତଙ୍କର ଧାରଣା ହେଲା । ମାତ୍ର ରାତିକୁ ତାକୁ ଖୋଇବାକୁ ଉଠାଇବା ବେଳକୁ ଦେଖିଲୁ ତା'ର ଚେତା ନାହିଁ । ସଙ୍ଗେ ସଙ୍ଗେ ଚହଳ ପଡ଼ିଗଲା । ଡାକ୍ତର ଆସି ପହଞ୍ଚି ବିଭିନ୍ନ ପରୀକ୍ଷାନିରୀକ୍ଷା କଲେ, ଏପରିକି ଦିଆଯାଇଥିବା ଇଞ୍ଜେକ୍‌ସନ୍‌ର ଶିଶି ପର୍ଯ୍ୟନ୍ତ । ସବୁ ଠିକ୍ ଅଛି କହିସାରି ସେ ସନ୍ଦେହ ପ୍ରକଟ କଲେ ବୋଧହୁଏ ଇନ୍‌ଟ୍ରା-ମସ୍‌କୁଲାର ଇଞ୍ଜେକ୍‌ସନ୍‌ଟା ଇନ୍‌ଟ୍ରାଭେନସ୍ ହୋଇଯାଇଅଛି । ଘରେ କିଛି କରି ହେବନି କହି ତୁରନ୍ତ ହସ୍‌ପିଟାଲ୍‌କୁ ସିଫ୍‌ଟ କରିବାକୁ କହିଲେ ।

ଡାକ୍ତରଖାନାରେ ଦିନେ ଗଲା, ଦୁଇଦିନ ଗଲା ଏବଂ ଏମିତି ଦିନେ ଦିନେ ଯାଇ ବିତିଗଲା ସପ୍ତାହେ । ତଥାପି ତା'ର ଚେତା ଫେରୁ ନ ଥାଏ । ଡାକ୍ତର କିନ୍ତୁ ଆଶ୍ୱାସନା ଦେଇ ଚାଲିଥାଆନ୍ତି—ବ୍ୟସ୍ତ ହେବାର କିଛି ନାହିଁ, ସବୁ ଠିକ୍ ହୋଇଯିବ । ବାପା ଓ ବୋଉ ଦିନମାନ ମେଡିକାଲ୍‌ରେ ରୁହନ୍ତି, ରାତିର ମେଡିକାଲ ଡ୍ୟୁଟି ମୋ ଭାଗରେ ପଡ଼େ । ମୋର ସେ ସମୟକୁ ବି.ଏସ୍‌ସି. ପରୀକ୍ଷା ସରିଥାଏ, ପଢ଼ାପଢ଼ି ମଧ୍ୟ କିଛି ନ ଥାଏ । କୋମା ପ୍ୟାସେଣ୍ଟ, ଉଠା, ବସା କିମ୍ବା ରାତିରେ ଝାଡ଼ା ପରିସ୍ରା ନେବାରେ ଝନ୍‌ଝଟ ନ ଥାଏ, ତେଣୁ ମୁଁ ମୋର ରାତି ଖାଇବାଟା ଜଲଦି ସାରି ଦେଇ ହାତରେ କିଛି ମ୍ୟାଗାଜିନ୍ ଧରି ବାହାରିଯାଏ ମେଡିକାଲ । ସାନଭାଇର ବେଡ଼୍ ପାଖରେ ଗୋଟେ ଇଜି ଚେୟାରରେ ମୋର ସାରାରାତି କଟିଯାଏ ପତ୍ରପତ୍ରିକା ପଢ଼ିବାରେ ।

ସେହି ସମୟରେ ରାତି ଡ୍ୟୁଟି ପଡୁଥିଲା ନିର୍ମଳାଦିଦୀଙ୍କର । ଜଣେ ନର୍ସ ଭାବରେ ତାଙ୍କର ଯଥେଷ୍ଟ ନାଆଁ ଥିଲା । ତାଙ୍କର ସ୍ନେହ, ଶ୍ରଦ୍ଧା ଓ ସେବା ଭାବ ଦେଖି କେହି କେହି ତାଙ୍କୁ ଫ୍ଲୋରେନ୍‌ସଦିଦୀ ବୋଲି ଡାକିବା ଆରମ୍ଭ କରି ଦେଇଥିଲେ ।

ସାନଭାଇର ଆଟେଣ୍ଡାଣ୍ଟ ହେବା ସମୟରେ ହିଁ ମୋର ତାଙ୍କ ସହ ପରିଚୟ ହେଲା । ସେ ତାଙ୍କର ରାତି ଡ୍ୟୁଟିର ସମୟ କାଟିବାକୁ ମୋଠାରୁ ପତ୍ରପତ୍ରିକା ନେଇ ପଢ଼ାପଢ଼ି କଲେ । ମୁଁ ମଧ୍ୟ ତାଙ୍କର ସଉକ ଦେଖି ପ୍ରତିଦିନ କିଛି ନା କିଛି ନୂଆ ପତ୍ରପତ୍ରିକା ଧରି ପହଞ୍ଚେ । ମୁଁ ଚାହୁଥାଏ ତାଙ୍କ ସହିତ ମୋର ଘନିଷ୍ଠତା ବଢୁ, ଯାହା ଫଳରେ ମୋ ସାନଭାଇର ହେପାଜତ୍ ଭଲ ଭାବରେ ହୋଇପାରିବ । କିଛିଦିନର ସଂପର୍କ ପରେ ନିର୍ମଳାଦିଦୀ ବି ମୋ ବିଷୟରେ ଓ ଆମ ପରିବାର ବିଷୟରେ ସବୁକଥା ପଚାରି ବୁଝିନେଲେ ।

ଦିନେ ଆମ ଉଭୟଙ୍କ ଗପସପ ମଧ୍ୟରେ ମୁଁ ତାଙ୍କୁ ପଚାରିଦେଲି- "ଆପଣଙ୍କର ପିଲାମାନେ କ'ଣ କରନ୍ତି ?"

କିଛିକ୍ଷଣ ଖୁବ୍ ନୀରବ ରହିଲେ ସେ । ତା'ପରେ ଗମ୍ଭୀର ଭାବରେ କହିଲେ, ପିଲାମାନେ ବୋଇଲେ ମୋର ଗୋଟିଏ ବୋଲି ଝିଅ, ଏବେ ଆଇ.ଏସ୍‌ସି. ପଢୁଛି । ମୁଁ କାଳେ ଆଉ କ'ଣ ଅଧିକ ପଚାରି ପକାଇବି ସେଥିପାଇଁ କଥାର ମୋଡ଼ ସଙ୍ଗେ ସଙ୍ଗେ ବଦଳାଇ ଦେଇ କହିଲେ- "ଆଚ୍ଛା, ତମେ ବି.ଏସ୍‌ସି. ପରୀକ୍ଷା ଦେଇ ଆସିଛ ବୋଲି କହୁଥିଲ ନା ?"

"ହଁ !"

"ମୋ ଝିଅକୁ ଟିକିଏ ଫିଜିକ୍ସ, କେମେଷ୍ଟ୍ରି ବୁଝାଇଦେଇ ପାରିବ ?"

"ନିଶ୍ଚୟ ।"

"ହଉ— ତମ ସାନଭାଇର ଦେହ ଆଗେ ଭଲ ହୋଇଯାଉ, ତା'ପରେ ଦେଖିବା ।"

ସାନଭାଇର ଦେହ ଭଲ ହୋଇପାରିଲା ନାହିଁ । ଦୀର୍ଘ ପଚିଶଦିନ କାଳ କୋମା ଷ୍ଟେଜ୍‌ରେ ରହି ସେ ଚାଲିଗଲା । ନିର୍ମଳାଦିଦୀଙ୍କ ସହ ମୋର ସଂପର୍କ ଏତେ ବଢ଼ିଯାଇଥିଲା ଯେ ଆମେ ଡାକ୍ତରଖାନାରୁ ଶବ ନେଇ ଆସିବାବେଳେ ମାନସିକ ଭାରସାମ୍ୟ ହରାଇ ବସୁଥିବା ମୋ ବୋଉକୁ ଧରି ସେ ଘରକୁ ଆସିଥିଲେ । ପରେ ପରେ କ୍ରମାଗତ ଭାବରେ କିଛି ଦିନ ଧରି ସେ ଆମ ଘରକୁ ଆସି ବୋଉକୁ ସାଧମତେ ବୁଝାଇବା ସହ ବାପା ଓ ବୋଉ ଠିକ୍ ସମୟରେ ଖାଇଲେ କି ନାହିଁ ତା'ର ତଦାରଖ କରୁଥିଲେ । ତାଙ୍କର ଏହି ବାରମ୍ବାର ଯିବାଆସିବା ଭିତରେ ସେ ଆମ ପରିବାର ସହ ଏମିତି ଏକ ସଂପର୍କର ମାୟାଜାଲ ଲଗାଇଦେଲେ ଯେ ଆମେ ସମସ୍ତେ ତାଙ୍କୁ କେବଳ ଆମର ହିତାକାଙ୍‌କ୍ଷୀ ନୁହଁ, ପରିବାରର ଜଣେ ସଦସ୍ୟ ବୋଲି ଭାବିଲୁ ।

ଧୀରେ ଧୀରେ ସାନଭାଇର ମୃତ୍ୟୁ ଶୋକରୁ ମୁକୁଳି ଆସୁଥିଲା ବୋଉ । ଦିନେ ସକାଳୁ ଉଠି ବାପାଙ୍କୁ ଚା' ଦେବା ଅବସରରେ ପଚାରିଲା- "ଏଇ କିଛିଦିନ ହେଲାଣି ନିର୍ମଳାଦିଦୀ କାହିଁକି ଆସି ନାହାନ୍ତି ?"

ବାପା କହିଲେ- "ସେ ଚାକିରିଆ ସ୍ତ୍ରୀଲୋକ। ନିଜ ଦାୟିତ୍ୱ ସମ୍ଭାଳିବେ ନା ଆମ ଘରକୁ ପ୍ରତିଦିନ ଆସିବେ !"

"ନାଇଁମ, ତାଙ୍କ ଦେହପା' କିଛି ହେଇଥିବ । ମୁଁ ଭାବୁଛି ସ୍ୱରୂପକୁ ଟିକେ ପଠାଇଦେଲେ ସେ ଯାଇ ଭଲମନ୍ଦ ବୁଝି ଆସନ୍ତା ।"

"ଭଲକଥା- କିଏ ମନା କରୁଛି ।"

ମୁଁ ଥିଲି ପାଖରେ । ମନେ ମନେ ଭାବୁଥିଲି ବୋଉ ମୋତେ କହୁ ଯିବାପାଇଁ। ଅଥଚ ମନର ଭାବ ଗୋପନ ରଖି ଏପଟ ସେପଟ ହେଉ ହେଉ ବୋଉ ଯେତେବେଳେ ମୋତେ କହିଲା ଯିବା ପାଇଁ- ମୁଁ ଚଟାପଟ କହିଲି, "ସେ ଚାକିରିଆ ସ୍ତ୍ରୀଲୋକ, ତାଙ୍କ ସମସ୍ୟା ନେଇ ବ୍ୟସ୍ତ ଥିବେ, ତାଙ୍କର ଆସିବା ନ ଆସିବା ନେଇ ଆମର ଏତେ ବ୍ୟସ୍ତ ହେବାର କ'ଣ ଅଛି ?"

"ଆରେ ସେ ସ୍ତ୍ରୀଲୋକଟି ପନ୍ଦର ଦିନ କାଳ ସକାଳେ ସଞ୍ଜେ ରିକ୍ସା କରି ଆସି ଆମ ଦୁଆରେ ଠିଆ ହେଲେ । ଏତେ ତ ବନ୍ଧୁବାନ୍ଧବ, ସମ୍ପର୍କୀୟ ଥିଲେ, କେହି

ଆସିଲେ ଦୁଃଖ ସମୟରେ ? ତୁ ଏବେ ଟିକେ ତାଙ୍କ ଖବର ବୁଝି ଆସିବାକୁ କହିବାରୁ କହୁଛୁ ଆମର ଏତେ ବ୍ୟସ୍ତ ହେବାର କ'ଣ ଅଛି ?'' କହୁ କହୁ ପୁଣି ଥରେ କାନ୍ଦିଉଠିଲା ବୋଉ ।

ବୋଉର କାନ୍ଦ ଦେଖି ମୁଁ କହିଲି, ''ଠିକ୍ ଅଛି, ମୁଁ ଏଇନେ ଯାଉଛି ତାଙ୍କ ଘରଆଡ଼େ ବୁଲି ଆସିବି ।''

ମୁଁ ତାଙ୍କ କ୍ୱାର୍ଟରରେ ପହଞ୍ଚିବା ବେଳେ ଘର ଭିତରପଟୁ ବନ୍ଦ ଥିଲା । କଲିଂ ବେଲ୍ ଚିପିଲି । ଭିତରୁ ଶୁଭିଲା- 'ହଁ ଯାଉଛି' ! ତା'ପରେ ସାୱାରରୁ ପାଣି ପଡ଼ିବାର ଶବ୍ଦ । ମୁଁ ଅନୁମାନ କଲି ଦିଦୀ ବୋଧହୁଏ ବାଥ୍‌ରୁମ୍‌ରେ ଅଛନ୍ତି । ତେଣୁ ଅପେକ୍ଷା କରିବା ସମୟତକ ମୁଁ ବାରଣ୍ଡାରେ କୁଣ୍ଡ ମଧ୍ୟରେ ଥିବା କାକ୍‌ଟସ ଗଛମାନଙ୍କୁ ଦେଖୁଥାଏ, କିଛି ସମୟ ପରେ କବାଟ ଖୋଲିଲା । ଶୀତ ସକାଳର ଶିଶିରଭିଜା ପଦ୍ମଫୁଲ ପରି ଝିଅଟିଏ । ଗୋଟେ ଶ୍ୱେତଶୁଭ୍ର ଗାଉନ୍ ପିନ୍ଧି ମୋ ସାମ୍ନାରେ । ମୁଣ୍ଡବାଳ, ମୁହଁ ଓ ଦେହ ଉପରେ ଟିପିଟିପି ଜଳବିନ୍ଦୁ । ତରବରରେ କବାଟ ଖୋଲି ପକାଇଥିବାରୁ ଅପ୍ରତିଭ ହୋଇପଡ଼ି କହିଲା—''ମୁଁ ଭାବିଲି ମାଆ ହସ୍‌ପିଟାଲରୁ ଫେରି ଆସିଲାଣି ବୋଲି । ଆପଣ ମାଆଙ୍କୁ ଖୋଜୁଥିଲେ ତ ?''

''ହଁ— ସେ କ'ଣ ହସ୍‌ପିଟାଲରୁ ଫେରି ନାହାନ୍ତି କି ?''

ନିଜକୁ ଯଥାସମ୍ଭବ ଡୋର୍‌ସ୍କ୍ରିନ୍ ସହ ଜଡ଼ାଇ ଧରି ସେ କହିଲା, ''ଫେରିବା ବେଳ ତ ହୋଇଗଲାଣି । ଏବେ ଏବେ ଫେରି ଆସିବେ ।''

''ହଉ ଠିକ୍ ଅଛି- ସେ ଆସିଲେ କହିଦେବେ ସ୍ୱରୂପ ଆସିଥିଲା ବୋଲି ।''

ମୋ ନାଆଁଟି ଶୁଣିସାରି ସେ କହିଲା- ''ଓଃ, ଆପଣ ସ୍ୱରୂପବାବୁ ! ଭିତରକୁ ଆସନ୍ତୁ, ମାଆ ଏଇନେ ଆସିଯିବ ବୋଧେ !''

ମୁଁ ଭିତରେ ଯାଇ ବସିବା ଅବସରରେ ସେ ଚଟାପଟ ନିଜର ଡ୍ରେସ ବଦଳାଇ ଦେଇ ଆସି କହିଲା- ''ମୁଁ ମାଆଠାରୁ ଅନେକ ଥର ଆପଣଙ୍କ ବିଷୟରେ ଶୁଣିଛି । ଶୁଣି ଶୁଣି ନାଆଁଟି ମୋର ଚିହ୍ନା ହୋଇଯାଇଥିଲା ।''

ଆମର ଏତିକି କଥାବାର୍ତ୍ତା ଭିତରେ ଗେଟ୍ ଖୋଲିବାର ଶବ୍ଦ ହେଲା । ''ହେଇ ମାଆ ଆସିଗଲେ ବୋଧେ'' କହି ସେ ସ୍କ୍ରିନ ଆଡ଼େଇ ଦେଖିଲା । ସତକୁ ସତ ନିର୍ମଳାଦିଦୀ ଆସୁଥିଲେ ।

ସେ ମୋତେ ଦେଖୁ ଦେଖୁ ପଚାରିଲେ—''ଆରେ, ତମେ କେତେବେଳୁ ଆସିଲଣି ?''

—''ଏଇ ଏବେ ଏବେ । ଆପଣ ସାତ ଆଠଦିନ ହେଲାଣି ଆମ ଘରଆଡ଼େ ଯାଇ ନାହାନ୍ତି, ବୋଉ ତ ପୂରା ବ୍ୟସ୍ତ । କହିଲା କିଛି ଭଲମନ୍ଦ କାଳେ ହେଇଥିବ, ତୁ ଯାଆ ବୁଝି କରି ଆସିବୁ ।''

— ''ନାଇଁମ, ଦେହ ପା' କାହିଁକି ଖରାପ ହେବ । ଏଇ ସାତଦିନ ହେଲାଣି ଗୋଟେ କ୍ୟାମ୍ପ ଡ୍ୟୁଟି ପଡ଼ିଥିଲା । ସକାଳୁ ଯାଉଥିଲୁ, ଫେରିବା ବେଳକୁ ରାତି ହେଉଥିଲା, ତେଣୁ ଯାଇପାରି ନ ଥିଲି ।''

— ''ହଉ ତମେ ବସ, ମୁଁ ଏ ଡ୍ୟୁଟି ଡ୍ରେସଟାକୁ ବଦଳାଇ ଦିଏ, କଥା ହେବା ।''

ସେ ତାଙ୍କର ଡ୍ୟୁଟି ଡ୍ରେସ ବଦଳାଇ ଆସିବାବେଳେ ଝିଅକୁ ଡାକି କହିଲେ- ''ଆଲୋ ମାଆ! ଟିକିଏ ସରବତ୍ କରି ଆଣ ତ ।''

ସେ ସରବତ୍ ଧରିଆସିବା ପରେ ଦିଦୀ କହିଲେ— ''ୟାକୁ ପଢ଼ାଇବା କଥା ତମକୁ କହୁଥିଲି । ତମକୁ କ'ଣ ଏବେ ବେଳ ହେବ ?''

— ''ହଁ — ଏବେ ତ ମୋର ଛୁଟି ଅଛି । କିଛି ଅସୁବିଧା ନାହିଁ ।''

ଏହାପରେ ମୁଁ କିଛି ଦିନ ପାଇଁ ସୁକନ୍ୟାର ଟିଉଟର ହୋଇଯାଇଥିଲି ।

ସୁକନ୍ୟା ପାଠରେ ତ ମନୋଯୋଗୀ ଥିଲା କିନ୍ତୁ ତା' ଭିତରେ ତାରୁଣ୍ୟର ଚପଳତା ଆଦୌ ନ ଥିଲା । ସେ ତା'ର ନିଜ ବୟସଠାରୁ ଅଧିକ ଗମ୍ଭୀର ଓ ଆବଶ୍ୟକତାଠାରୁ ଅଧିକ ନୀରବ ଥିଲା । ପାଠ ପଢ଼ାଇବା ବେଳେ ତା'ର ପ୍ରଶ୍ନଗୁଡ଼ିକ ମୋତେ ବାଧ୍ୟ କରୁଥିଲା ତା'ର ଜଣେ ଅନୁଗତ ଛାତ୍ର ଭାବରେ ଉତ୍ତର ଦେବାକୁ ।

ଥରେ ମୁଁ ତାକୁ ପଢ଼ାଇବାପାଇଁ ପହଞ୍ଚିବା ବେଳକୁ ସେ ଥିଲା ବାଥ୍‌ରୁମ୍‌ରେ । ମୁଁ ତା'ର ପଢ଼ା ଟେବୁଲ ପାଖରେ ବସି ଏପଟ ସେପଟ ଖୋଳାଉ ଖୋଳାଉ ଦେଖିଲି ଗୋଟିଏ ଆଲବମ୍ ଥୁଆ ହୋଇଛି । ମୁଁ ଆଲବମ୍‌ଟିକୁ ଖୋଲି ଦେଖିଲି । ଗୋଟିଏ ଫଟୋରେ ନିର୍ମଳାଦିଦୀଙ୍କ ପାଖରେ ଛିଡ଼ା ହୋଇଛନ୍ତି ଜଣେ ଯୁବକ । ମାତ୍ର ଯୁବକଜଣଙ୍କର ମୁହଁକୁ କାଗଜରେ ଅଠାଦେଇ ଲୁଚାଇ ଦିଆଯାଇଥିଲା । ଫଟୋଟି ତଳେ ଲେଖାଯାଇଥିଲା 'ଏ ସାଟାନ୍ ଇନ ପାରାଡାଇଜ୍' । ତା'ପରେ ଫଟୋଟିରେ ସୁକନ୍ୟା ବସିଛି ମଝିରେ । ଗୋଟିଏ ପଟେ ନର୍ମଳାଦିଦୀ ଓ ଆରପଟର ଫଟୋଟିକୁ ସଂପୂର୍ଣ୍ଣ ଲୁଚାଇ ଦିଆଯାଇଥିଲା ରଙ୍ଗମାରି । ତା' ତଳର କ୍ୟାପ୍‌ସନ୍ ଥିଲା 'ଅଡ୍ ମ୍ୟାନ୍ ଆଉଟ୍' । ମୁଁ କୌତୂହଳବଶତଃ ଆଲବମଟିକୁ ଓଲଟାଇ ଓଲଟାଇ ଚାଲିଲି । ସେଥିରେ ଥିବା ସମସ୍ତ ଫଟୋ, ନିର୍ମଳାଦିଦୀ, ସୁକନ୍ୟା ଓ ସେ ଲୋକଜଣକର ଥିଲା । ମାତ୍ର ସବୁ ଫଟୋରେ ତାଙ୍କର ମୁହଁ ଲୁଚାଇ ଦିଆଯାଇଥିଲା । ଶେଷରେ

ଥିଲା ସୁକନ୍ୟାର ବାଳିକା ଅବସ୍ଥାର ଏକ ଚମତ୍କାର ଫଟୋ । ତା' ତଳେ ଲେଖାଯାଇଥିଲା- 'ଏକା ଏକା- ଏକାକିନୀ' ।

ମୁଁ ଫଟୋଗୁଡ଼ିକ ଦେଖୁଥିବା ଅବସ୍ଥାରେ ପହଞ୍ଚିଗଲା ସୁକନ୍ୟା । ବିଶେଷ କୌଣସି ପ୍ରତିକ୍ରିୟା ନ ଦେଖାଇ କେବଳ ଟେବୁଲ୍ ଉପରୁ ଆଲବମ୍‌ଟି ଉଠାଇନେଇ ରଖିଦେଲା ଆଲମିରାରେ ।

ସେ ଆଲବମ୍‌ଟି ରଖି ଫେରିବା ପରେ ମୁଁ ପଚାରିଲି- "ଏଇଟି ତୁମର ପରିବାରର ଆଲବମ୍ ନା ?"

— "ପରିବାରର ନୁହେଁ- ମାଆର ଓ ମୋର ।"

— "ସେଥିରେ ଯେଉଁ ଲୋକଜଣଙ୍କୁ ସବୁଠି ଲୁଚାଇ ଦିଆଯାଇଛି ସେ କିଏ ?"

— "ମୋର ଜନ୍ମଦାତା, ମାତ୍ର ବାପା ନୁହନ୍ତି ।"

ମୁଁ ବିସ୍ମିତ ହୋଇ ତା' ମୁହଁକୁ ଚାହିଁବାବେଳେ ସେ କହିଲା—"ବାପା ହେବାକୁ ହେଲେ କିଛି ନିର୍ଦ୍ଦିଷ୍ଟ ଦାୟିତ୍ୱ ଓ କର୍ତ୍ତବ୍ୟବୋଧ ସଂପାଦନ କରିବାକୁ ହୁଏ । ସେଥିରୁ କୌଣସିଟାକୁ ବି ସେ ଲୋକଜଣକ କରି ନାହାନ୍ତି, ତେଣୁ ବାପା ନୁହନ୍ତି । ଜଣେ ଧପ୍ପାବାଜ ଓ ସ୍ୱାର୍ଥସର୍ବସ୍ୱ ମଣିଷ । ମୋ' ମାଆର ଜୀବନ ନଷ୍ଟ କରିବା ସହ ମୋତେ ବି ବଞ୍ଚିତ କରିଛନ୍ତି 'ବାପା' ପରି ଏକ ମହନୀୟ ସଂପର୍କର ପରିଧିରୁ । ତେଣୁ ମୁଁ ତାଙ୍କୁ କେବେ ବାପା ବୋଲି ଚିନ୍ତା କରିପାରିନି । ସେ ମୋ ମାଆପାଇଁ ଯେମିତି ଜଣେ ତୃତୀୟ ପୁରୁଷ, ମୋପାଇଁ ବି ସେମିତି ମିଃ. ନୋବଡି ।"

ଆମର ଆଲୋଚନା ଚାଲିଥିବାବେଳେ ପହଞ୍ଚିଗଲେ ନିର୍ମଳାଦିଦୀ । ଗୋଟେ ଥମ୍‌ଥମ୍ ବାତାବରଣରୁ ସେ ଘଟଣାଟା କ'ଣ ବୋଲି ବୋଧହୁଏ ଅନୁମାନ କରିନେଲେ । ଘର ଭିତରକୁ ଯାଇ ଲୁଗା ବଦଳାଇ ଫେରିଆସି ବସିପଡ଼ିଲେ ସୋଫା ଉପରେ । କିଛି ସମୟ ନୀରବତାରେ ବିତିଯିବା ପରେ ସେ ତାଙ୍କର ନୀରବତା ଭଙ୍ଗ କରି ସ୍ୱଗତୋକ୍ତି କଲାପରି କହିଲେ- "ଜଣେ ପୁରୁଷର ସବୁ ଦୋଷକୁ କ୍ଷମା କରାଯାଇପାରେ ମାତ୍ର ସଂସାର ନାଆଁରେ ଶଠତାକୁ କ୍ଷମା କରାଯାଇପାରେନା ।"

— "ତୁ ଗଲୁ ମାଆ ! ଟିକେ ଚା' ତିଆରି କରି ଆଣିବୁ ।" ସୁକନ୍ୟା ଭିତରକୁ ଚାଲିଯିବା ପରେ ସେ କହିଲେ- "ବୁଝିଲ ସ୍ୱରୂପ ! ତମେ ଆଜି ନ ହେଲେ ବି କାଲିକୁ ଏକଥା ଜାଣିଥାଆନ୍ତ । ଏ ପ୍ରଶ୍ନଟିକୁ ତମେ ତମ ଭିତରେ ନା ବେଶିଦିନ ରଖି ପାରିଥାଆନ୍ତ ନା ଆମେ ତମଠାରୁ ଏକଥାଟିକୁ ଲୁଚାଇ ରଖିବାକୁ ସମର୍ଥ ହୋଇଥାଆନ୍ତୁ । ମୁଁ ସେ ଲୋକଟିକୁ ଯେତେ ମାତ୍ରାରେ ଭଲ ପାଉଥିଲି, ସେ ଯଦି

ସତକଥାଟା କହି ଦେଇ ଥାଆନ୍ତେ ତେବେ ମୋତେ ତାଙ୍କର ରକ୍ଷିତା ହୋଇ ରହିବାକୁ ମଧ ଦ୍ୱିଧାବୋଧ ହୋଇ ନ ଥାନ୍ତା । ମାତ୍ର ତାଙ୍କର ଗୋଟେ ପରିପୂର୍ଣ୍ଣ ସଂସାର ଥାଉ ଥାଉ, ପ୍ରେମ ନିଆଁରେ ପଇସା ଲୋଭରେ ଏମିତି ପ୍ରତାରଣାକୁ ମୁଁ ଆଦୌ ଗ୍ରହଣ କରିପାରିଲି ନାହିଁ । ଲୋକଟା ଏତେ ନିର୍ଲଜ ଥିଲା ଯେ ପ୍ରତାରଣାଟାକୁ ପ୍ରତାରଣା କରି ନିଜ ଭିତରେ ରଖିପାରିଲା ନାହିଁ- ଶେଷରେ କହିଦେଲା ଯେ ଗୋଟେ ଆର୍ଥିକ ନିରାପତ୍ତାପାଇଁ ସେ ମୋ ସହ ପ୍ରେମରେ ପଡ଼ିଥିଲା ।''

''ଥୁଃ- ମୋ ଚାକିରିର ଆର୍ଥିକ ନିରାପତ୍ତା ଥିଲା ତା' ପ୍ରେମର ଆକର୍ଷଣ, ମୁଁ କିଛି ନ ଥିଲି ।''

ଲୋକଟାର କୁତ୍ସିତ ମାନସିକ ଆବେଗପାଇଁ ତା' ଉପରେ ମୋର ପ୍ରଚଣ୍ଡ ଘୃଣା ଆସିଥିଲା । ମାତ୍ର ଯେଉଁଦିନ ତା'ର ପତ୍ନୀ ଓ ପିଲାମାନଙ୍କୁ ଦେଖିଲି ତା' ଉପରେ ମୋର ଦୟା ଆସିଲା । ସେଦିନ ମୁଁ ମନେ ମନେ ନିଷ୍ପତ୍ତି ନେଲି ମୋର ଭୁଲ ପାଇଁ ଆଉ ଗୋଟେ ନିରୀହା ଝିଅ ଓ ତା'ର ସ୍ୱପ୍ନର ସଂସାରକୁ ନଷ୍ଟ କରିବାର ଅଧିକାର ମୋର ନାହିଁ । ସେବେଠାରୁ ଛି-କରି ଦେଇଛି ତାକୁ ଓ ତା' ସହ ସଂପର୍କକୁ । ଅନେକଥର ଭାବିଲିଣି ନିଜ ରାଜ୍ୟକୁ ଫେରିଯିବା ପାଇଁ ମାତ୍ର ସୁକନ୍ୟାର ଭବିଷ୍ୟତ୍ ବିଷୟ ଚିନ୍ତା କରି ଏଠାରେ ରହି ଚାକିରି କରିବାକୁ ବାଧ ହୋଇଛି ।

ଏହାପରେ ଧୀରେ ଧୀରେ ସୁକନ୍ୟା ମୋ ନିକଟରେ ଟିକିଏ ମୁକ୍ତ ହୋଇଗଲା । ସେ ଆଉ ପୂର୍ବପରି ଗମ୍ଭୀର ଓ ଉଦାସ ରହୁ ନ ଥିଲା । ମୁଁ ତା'ର ପରିବର୍ତ୍ତନକୁ ଲକ୍ଷ୍ୟ କରି ଦିନେ ତାକୁ ପଚାରିଲି- ''ମଣିଷକୁ ଈଶ୍ୱରଙ୍କର ଶ୍ରେଷ୍ଠ ଦାନ କ'ଣ ଜାଣିଛ ?''

ସେ କେବଳ ସ୍ଥିର ଭାବରେ ମୋ ମୁହଁକୁ କିଛି ସମୟ ଚାହିଁଲା ଏବଂ ତା' ଆଖିର ସ୍ଥିର ଭାଷାରେ ଯେମିତି କହିବାକୁ ଚାହୁଥିଲା—ପ୍ରେମ ।

ବିସ୍ମୃତ ବିସ୍ମୃତ ହେଉଛି ମଣିଷଙ୍କୁ ଈଶ୍ୱରଙ୍କ ଶ୍ରେଷ୍ଠ ଦାନ । କୌଣସି ଦୁଃଖଦ ଘଟଣା, ଶୋକ, ମାନ, ଅପମାନ ଇତ୍ୟାଦିକୁ ଭୁଲିବାର ଶକ୍ତି ଯଦି ମଣିଷର ନ ଥାନ୍ତା ତେବେ ହୁଏତ ସେ ବଞ୍ଚିପାରନ୍ତା ନାହିଁ । ତେଣୁ ଯାହା ଘଟିଯାଇଛି ତା' ପାଇଁ ନିଜକୁ ସବୁବେଳେ ସଂକୁଚିତ କରି ରଖିବା ଦ୍ୱାରା ତମେ କେବଳ ନିଜର ହିଁ କ୍ଷତି କରିବ । ଏ ପୃଥିବୀ ଅନେକ ସୁନ୍ଦର, ଜୀବନ ବି ତା'ଠାରୁ ସୁନ୍ଦର । ଯେତିକି ଦିନର ଜୀବନ ଆମେ ପାଇଛେ ତାକୁ ଜୀବନ ଭଳି ଭଲପାଇବା ଓ ଉପଭୋଗ କରିବା ଉଚିତ ।

ଧୀରେ ଧୀରେ ବଦଳିଗଲା ସୁକନ୍ୟାର ସ୍ୱଭାବ ଠିକ୍ ମେଘମୁକ୍ତ ଆକାଶ ପରି । ତା' ଭିତରେ ଅବଦମିତ ହୋଇ ରହିଥିବା ଗୋଟେ କୁଆଁରୀ ଝିଅ ପ୍ରଜାପତି ପରି ଡେଣା ମେଲାଇ ଉଡ଼ିଥିଲା । ତା'ର ଆଖି, ହସ ଓ କଥାବାର୍ତ୍ତାରେ ଫେରି ଆସିଥିଲା ଚମକ ।

ମୁଁ ତା'ର ପରିବର୍ତ୍ତନକୁ ଲକ୍ଷ୍ୟ କରି ଖୁସି ହୋଇ ଦିନେ କହିଲି— ଶଁବାଳୁଆ କେବେ ଜାଣି ନ ଥାଏ ଯେ' ତା'ଭିତରେ ଏକ ରଙ୍ଗିନ ପ୍ରଜାପତି ହେବାର ସୌଭାଗ୍ୟ ନିହିତ ଅଛି ବୋଲି ।

କେବଳ ପ୍ରଜାପତିଟିଏ ହୋଇଗଲେ ଶଁବାଳୁଆର ସୌଭାଗ୍ୟର କିଛି ମୂଲ୍ୟ ନାହିଁ ଯଦି ସେ ଫୁଲ ଓ ଫୁଲବଗିଚା ପରିବର୍ତ୍ତେ ନର୍ଦ୍ଦମାରେ ବସେ । ମୁଁ ଭାବୁଛି ମୋର ପରିବର୍ତ୍ତନର ଆୟୁ ନର୍ଦ୍ଦମାରୁ କେବେ ଫୁଲବଗିଚା ପର୍ଯ୍ୟନ୍ତ ଲମ୍ବି ନ ପାରେ ।

ପ୍ରଜାପତିପାଇଁ ଫୁଲ ଓ ଫୁଲପାଇଁ ପ୍ରଜାପତି ପରସ୍ପରର ପରିପୂରକ- ନର୍ଦ୍ଦମା ନୁହଁ ।

''ଏହା ସତ୍ୟ ହୋଇପାରେ ମାତ୍ର ସଂପୂର୍ଣ୍ଣ ସତ୍ୟ ନୁହଁ । ତମେ ଏଯାଏଁ ମୁକୁଳି ପାରିନ ତମର ରୁଦ୍ଧ ମାନସିକତାରୁ । ଥରେ ମୁକୁଳି ଓ ଦେଖ - ସାପ ଭୟରେ ପାଳଦଉଡ଼ି ଦେଖି ଡରନି ।''

''ନା- ମୋର ଭୟ ସେଥିରେ ନାହିଁ, ଭୟ କେବଳ ଇତିହାସର ପୁନରାବୃତ୍ତିକୁ ।''

ଇତିହାସର ପୁନରାବୃତ୍ତି ହୁଏ ସତ, ଇତିହାସ ବି କିଛି ଦୃଷ୍ଟାନ୍ତ ସୃଷ୍ଟି କରେ ପରବର୍ତ୍ତୀ ଯୁଗପାଇଁ ।

ସେମିତି ଦୃଷ୍ଟାନ୍ତ ସୃଷ୍ଟିପାଇଁ ଯେତିକି ସାହସ ଦରକାର ତାହା ଥିଲେ ତ?

କାହାର- ?

ସମୟର- ଆଉ କାହାର ।

ହଉ ସମୟ ଆସୁ, ଦେଖିବା ସମୟର ସାହସ କୁଳାଉଛି କି ନାହିଁ ।

ଏହାପରେ ଗୋଟେ ଅଲିଖିତ ଚୁକ୍ତିରେ ଆମେ ପରସ୍ପରକୁ ଭଲ ପାଇ ବସିଲୁ । ମୁଁ ତାକୁ ଯେତେ ଅଧିକ ଅଧିକ ଭଲ ପାଉଥିଲି ସେତେ ଅଧିକ ଅଧିକ ଅଭିଭାବକତ୍ୱ ଜାହିର କରୁଥିଲି ତା' ଉପରେ, ପ୍ରେମିକତ୍ୱ କମ୍ । କାରଣ ମୁଁ ଭାବୁଥିଲି ମୋର ସାମାନ୍ୟତମ ଭାବପ୍ରବଣତା ହୁଏତ ତା'ଭିତରେ ଶୋଇଯାଇଥିବା ଅବିଶ୍ୱାସର ନାଗସାପଟିକୁ ପୁନଃ ଫଣା ଉଠାଇବାର ସୁଯୋଗ ସୃଷ୍ଟି କରିପାରେ ।

ବି.ଏସ୍‌ସି. ରେଜଲ୍‌ଟ ବାହାରିବା ପରେ ମ୍ୟାନେଜ୍‌ମେଣ୍ଟ ପଢ଼ିବାପାଇଁ ମୁଁ ଚାଲିଗଲି ଦିଲ୍ଲୀ । ମୁଁ ଦିଲ୍ଲୀରେ ପଢ଼ିବା ସମୟରେ ହିଁ ବାପାଙ୍କର ବଦଳି ହୋଇଗଲା । ବାପା ସେ ସହର ଛାଡ଼ି ଚାଲି ଆସିବା ପରେ ମୋର କେବଳ ଯା' ଚିଠିପତ୍ରର ଯୋଗାଯୋଗ ରହିଲା ସୁକନ୍ୟା ସହ । ତା' ପୁଣି ସାମୟିକ ଓ ଗୋଟେ ଅଭିଭାବକତ୍ୱ ଭଙ୍ଗୀରେ ତା'ର ପାଠପଢ଼ାର ଭଲମନ୍ଦ ନେଇ । ନିୟମିତ ଭାବେ ଚାଲିଥିବା ଚିଠିପତ୍ରର ଧାରା ହଠାତ୍ ବନ୍ଦ ହୋଇଗଲା ସୁକନ୍ୟା ଆଇ.ଏସ୍‌ସି. ପାସ୍ କରି ବାଙ୍ଗାଲୋର ମେଡ଼ିକାଲ ପଢ଼ିବା ପରେ ।

ଚିଠିପତ୍ର ବନ୍ଦ ହେବାର କାରଣଟିକୁ ଖୋଜି ଖୋଜି ମୁଁ ବହୁଦିନ ପରେ ଜାଣିଲି ଯେ ବାପା ପ୍ରକାରାନ୍ତରେ ନିର୍ମଳାଦିଦୀଙ୍କୁ ସୂଚାଇ ଦେଇଥିଲେ ଯେ ସଂପର୍କ ଓ ସମ୍ବନ୍ଧ ଏକା କଥା ନୁହଁ । ଏତିକି ସୂଚନାହିଁ ଯଥେଷ୍ଟ ଥିଲା ତାଙ୍କପାଇଁ । ଝିଅ ଜୀବନରେ ତାଙ୍କ ପରି ଦୁର୍ଯୋଗ ନ ଆସୁ ଭାବି ସେ ଚାକିରିରୁ ଇସ୍ତଫା ଦେଇ ସୁକନ୍ୟାକୁ ଧରି ଚାଲିଯାଇଥିଲେ ବାଙ୍ଗାଲୋର । ନିଜର ସମସ୍ତ ସଂଚିତ ପୁଂଜିରେ ତାକୁ ମେଡିକାଲ ପଢ଼ିବାପାଇଁ ଆଡ଼ମିଶନ କରାଇଦେଇ ନିଜେ ଗୋଟେ ପ୍ରାଇଭେଟ୍ ନର୍ସିଂ ହୋମ୍‌ରେ ଜଏନ୍ କରିଥିଲେ ।

ଅନେକ ଚେଷ୍ଟା କରିଥିଲି ମୁଁ ସୁକନ୍ୟାର ଠିକଣା ଜାଣିବାପାଇଁ । ଏପରିକି କର୍ଣ୍ଣାଟକର ସମସ୍ତ ମେଡିକାଲ କଲେଜର ଠିକଣା ଆଣି ସବୁ କଲେଜକୁ ସୁକନ୍ୟା ନାଆଁରେ ଚିଠି ଦେଇଛି । ମାତ୍ର ଜାଣି ଜାଣି ହଜିବାକୁ ଚେଷ୍ଟା କରୁଥିବା ସୁକନ୍ୟା ପାଖରେ ମୋର ସବୁ ଚିଠି ଅନୁତ୍ତରିତ ରହିଯାଉଥିଲା ।

ମୁଁ ଜାଣୁଥିଲି ସୁକନ୍ୟା ହିଁ ମୋ ଜୀବନର ପୂର୍ଣ୍ଣତା ଓ ମୋ ଜୀବନର ଶୂନ୍ୟସ୍ଥାନ । ତାକୁ ଦେଇଥିବା କଥା ରଖିବାକୁ ଓ ପୁନଶ୍ଚ ପ୍ରେମରେ ଏକ ପ୍ରତାରଣାର ନଜିର ସୃଷ୍ଟି ନ କରିବାକୁ ମୁଁ ଆଉ ବିବାହ କରିବିନି ବୋଲି ନିଷ୍ପତ୍ତି ନେଲି । ମାତ୍ର ଘରର ଏକମାତ୍ର ପୁଅ ହିସାବରେ ବୋଉର ଏ ଆକାଙ୍‌କ୍ଷାଟିକୁ ପୂରଣ କରିବାକୁ ମୋତେ ଏକରକମ ବାଧ୍ୟ କରାଯାଇଥିଲା ।

ଦିଲ୍ଲୀରେ କିଛିବର୍ଷ ଚାକିରି କଲାପରେ ଆମ କମ୍ପାନୀର ଯେତେବେଳେ ବାଙ୍ଗାଲୋର୍‌ରେ ବ୍ରାଞ୍ଚ ଖୋଲାଗଲା ଏବଂ ପ୍ରସ୍ତାବ ଦିଆଗଲା ଯେଉଁମାନେ ବାଙ୍ଗାଲୋର୍ ବ୍ରାଞ୍ଚ ପାଇଁ ଚଏସ୍ ଦେବେ ତାଙ୍କୁ ପଠାଯିବ, ସେତେବେଳେ ବାଙ୍ଗାଲୋର ନାଆଁ ଶୁଣି ମୁଁ ସଂଗେ ସଂଗେ ଚଏସ୍ ଦେଲି । ମୋ ଭିତରେ ଏକ ପ୍ରଚଣ୍ଡ ଆତ୍ମବିଶ୍ୱାସ ଥିଲା ହୁଏତ କେଉଁ ମୋଡ଼ରେ ମୋର ପୁଣି ଥରେ ସୁକନ୍ୟା ସହ ସାକ୍ଷାତ୍ ହୋଇଯାଇପାରେ ।

ବାଙ୍ଗାଲୋରରେ ଜଏନ୍ କଲାପରେ ମନ୍ଦିର, ପାର୍କ, ସିନେମା ହଲ୍‌ଠୁ ରେସ୍ତୋରାଁ ଓ ପବ୍‌କ୍ଲବ ଯାଏ ଅନେକ ଖୋଜିଛି ସୁକନ୍ୟାକୁ । ବିନା କାରଣରେ ଘୂରିବୁଲିଛି ମେଡ଼ିକାଲ ପରେ ମେଡ଼ିକାଲ, ନର୍ସିଂ ହୋମ୍ ପରେ ନର୍ସିଂ ହୋମ୍, ମାତ୍ର କେଉଁଠି ପାଇ ନ ଥିଲି ସୁକନ୍ୟାର ସନ୍ଧାନ । ଧରି ନେଇଥିଲି ସୁକନ୍ୟା ଏକ ମଧୁର ସ୍ୱପ୍ନ, ସ୍ୱପ୍ନିଳ ଅନୁଭବ ଓ ଦୁଃଖଦ ସ୍ମୃତିର କଣ୍ଟାଟିଏ ହୋଇ କେବଳ ସାଇତା ହେବ ଛାତି ଉପରେ ।

ମୋ ସ୍ତ୍ରୀଙ୍କର ଡେଲିଭରି ପାଇଁ ଭର୍ତ୍ତି କରାଯାଇଥାଏ ନର୍ସିଂ ହୋମ୍‌ରେ । ସି.ଏସ୍. କରାଯିବାକୁ ଅପେକ୍ଷା କରାଯାଇଥିଲା ଡାକ୍ତର ମ୍ୟାଡାମ୍‌ଙ୍କର ଆସିବାକୁ । ମ୍ୟାଡାମ୍ ଆସି କାର୍‌ରୁ ଓହ୍ଲାଇ ସିଧା ଚାଲିଲେ ଓ. ଟି.କୁ । ଡାକ୍ତର କିଏ ଅପରେସନ୍ କରୁଛନ୍ତି ଜାଣିବାର ଉତ୍କଣ୍ଠା ନେଇ ମୁଁ ରିସେପ୍‌ସନିଷ୍ଟଙ୍କୁ ପଚାରିଲି ସି.ଏସ୍. କେଉଁ ମ୍ୟାଡାମ୍ କରୁଛନ୍ତି ? ମୋ ଆଡ଼କୁ ନ ଚାହିଁ ସେ କେବଳ କହିଲା ଡଃ. ସୁକନ୍ୟା କନ୍ନଡ଼ ।

ସୁକନ୍ୟା ନାଆଁଟା ହଠାତ୍ ଖେଳାଇଦେଲା ଏ ବିଜୁଳିର ଚମକ । ମୁଁ ଭୁଲିଗଲି ପ୍ରସବ ଯନ୍ତ୍ରଣାରେ ଅସ୍ଥିର ହୋଇ ଓ.ଟି.ରେ ଥିବା ମୋ ସ୍ତ୍ରୀଙ୍କର କଥା କିମ୍ବା ଆଉ ଅଳ୍ପ ସମୟ ପରେ ପାଇବାକୁ ଯାଉଥିବା ପ୍ରଥମ ପିତୃତ୍ୱର ଆନନ୍ଦ । ମୁଁ କେବଳ ଅପେକ୍ଷା କଲି ଥରଟିଏ ସୁକନ୍ୟା ସହ ସାକ୍ଷାତ୍ ପାଇଁ ।

ଅପରେସନ୍ ପରେ ପୁତ୍ର ସନ୍ତାନଟିଏ ଜନ୍ମ ହେଲା । ଓ.ଟି.ରୁ ବାହାରି ଆସୁଥିବା ସୁକନ୍ୟାକୁ ଦେଖି ମୋ ପାଟିରୁ ବାହାରି ପଡ଼ିଲା—ସୁକନ୍ୟା....

"କନ୍‌ଗ୍ରାଚ୍ୟୁଲେସନ୍- ପୁଅଟିଏ ହୋଇଛି । ମାଆ ଓ ଶିଶୁ ଉଭୟ ଭଲ ଅଛନ୍ତି ।"

"ମୁଁ ସ୍ୱରୂପ ।"

"ଜାଣେ । ପ୍ୟାସେଣ୍ଟର କେସ୍ ଡାଏରୀରୁ ମୁଁ ସବୁ ଦେଖିସାରିଛି । ମୋତେ ଲାଗିଲା ଅନେକ କିଛି ପଚାରିବାର ଥିଲେ ବି ମୁଁ କିଛି ପଚାରିପାରୁ ନାହିଁ । କେବଳ ପଚାରିଲି ତମେ ଭଲରେ ଅଛ ତ ?"

ଶଁବାଳୁଆରୁ ପ୍ରଜାପତିଯାଏ ଆସିବାଟାକୁ ଯଦି ଭଲ ବୋଲି ଧରାଯାଏ ତେବେ ମୁଁ ଭଲରେ ଅଛି । ମାତ୍ର ଏଠି ସେସବୁର ଆଲୋଚନା ଠିକ୍ ନୁହେଁ । ପାରିବ ଯଦି ସନ୍ଧ୍ୟାରେ ଆସ ଘରଆଡ଼େ । ମାଆ ବି ଖୁସି ହେବ ତମକୁ ଦେଖି । ଆଉ ଗୋଟେ ଅପରେସନ୍‌ପାଇଁ ଟାଇମ୍ ଦେଇଛି । ଏଇ ରଖ ମୋର କାର୍ଡ଼ । ସନ୍ଧ୍ୟାରେ ଆସିଲେ ଆଲୋଚନା ।

ସନ୍ଧ୍ୟାରେ ପହଞ୍ଚିଲି ସୁକନ୍ୟାର ଘରେ । ମୋର ଯିବା ଖବର ସେ ଦେଇ ନ ଥିଲା ତା'ର ମାଆଙ୍କୁ । ମୋତେ ଦେଖୁ ଦେଖୁ ବିସ୍ମୟ, ବିଷାଦ ଓ ଆନନ୍ଦରେ ଫାଟିପଡ଼ିଲେ ନିର୍ମଳାଦିଦୀ । ମାତୃସୁଲଭ ସ୍ନେହରେ ମୋତେ କୋଳେଇ ନେଉ ନେଉ କହିଲେ—''ଆଉ ତମ ସହ ସାକ୍ଷାତ୍ ହେବ ଏ ବିଶ୍ୱାସ ମୁଁ ରଖି ନ ଥିଲି । ଈଶ୍ୱରଙ୍କ ଇଚ୍ଛା ଦେଖ ।''

''ସୁକନ୍ୟା ନାହିଁକି ?''

''ଅଛି । ସକାଳୁ ଡ୍ୟୁଟିକୁ ଯାଇଛି ଯେ ଏଯାଏଁ ଫେରିନି । ମଝିରେ ଥରେ ଫୋନ କରିଥିଲା ସନ୍ଧ୍ୟାରେ ଫେରିବ ବୋଲି । ଏବେ ଏବେ ଫେରିଆସିବ ବୋଧେ । ହଉ ତମେ ବସ, ମୁଁ ଟିକେ ଚା' କରିଆଣେ, ଗପ ହେବା ।''

ନିର୍ମଳାଦିଦୀ ଚାଲିଗଲେ ଚା' କରିବାକୁ । ମୁଁ ଘରଭିତରେ ଏଣେତେଣେ ଚାହୁଁ ଚାହୁଁ ଚମକି ପଡ଼ିଲି । ସୁକନ୍ୟାର ଟେବୁଲ ଉପରେ ଫଟୋଟିଏ । ଫଟୋ ତଳେ ଲେଖାଥିଲା-

''ମୋ ପ୍ରତ୍ୟୟରୁ ଅଧିକ
ବିଶ୍ୱାସର ଊର୍ଦ୍ଧ୍ୱରେ
ପ୍ରେମିକ ନ ହେଲେ ନାହିଁ- ବନ୍ଧୁ ହୋଇ ଥାଅ ।''

ଦିଦୀ ଚା' ଧରି ପଶି ଆସୁ ଆସୁ କହିଲେ- ''ତମର ସବୁ ଚିଠି ତାକୁ ମିଳିଥିଲା । ମାତ୍ର ତା'ର ଏକାନ୍ତ ଜିଦ୍ ଥିଲା ବିଶ୍ୱାସ ଉପରୁ ବିଶ୍ୱାସ ନ ତୁଟୁ କୌଣସି ପରିସ୍ଥିତିରେ ।''

ଚା' ପିଇସାରି ନିର୍ମଳାଦିଦୀଙ୍କୁ କହିଲି- ''ମୁଁ ଆଉ କେବେ ଆସିବି, ସୁକନ୍ୟାକୁ ଏ ଚିଠିଟି କେବଳ ଦେଇଦେବେ । ଚିଠିରେ ଲେଖିଥିଲି- ବିଶ୍ୱାସ ତୁଟେନା, ତୁଟାଯାଏ । ବିଶ୍ୱାସ ତୁଟିଯିବା ଭୟରେ ଏ କୋମଳ ସନ୍ତ୍ରାସ କେତେଦୂର ଗ୍ରହଣୀୟ ? କେବେ ଚିନ୍ତା କରିଛ ମୋ କଥା ।''

# ଶେଷ ଦୃଶ୍ୟର ନାୟକ

ବ୍ୟବସାୟ ସଂଘର ସଭାପତି ତାଙ୍କ ଭାଷଣରେ କହିଲେ— "ସିଦ୍ଧିଦାତା ଗଣେଶ—ତାଙ୍କର କୃପାଦୃଷ୍ଟି ଆମମାନଙ୍କ ଉପରେ ରହିଛି ନିଶ୍ଚୟ । ଏଇ ପଚିଶବର୍ଷ ମଧ୍ୟରେ କେବଳ ଆମ ବ୍ୟବସାୟୀ ଭାଇମାନଙ୍କର ବ୍ୟବସାୟରେ ଆଶାତୀତ ଉନ୍ନତି ହୋଇ ନାହିଁ, ନୂଆ ନୂଆ ବ୍ୟବସାୟୀ ସୃଷ୍ଟି ହୋଇ ସଂଘର ସଦସ୍ୟ ସଂଖ୍ୟାର ମଧ୍ୟ ଆଶାତୀତ ବୃଦ୍ଧି ଘଟିଛି । ପଚିଶ ବର୍ଷ ତଳେ ମାତ୍ର ପଚିଶ ଜଣ ସଦସ୍ୟଙ୍କୁ ନେଇ ଆରମ୍ଭ କରାଯାଇଥିବା ପୂଜା କମିଟିରେ ଆଜି ତିନିଶହ ପଞ୍ଚସ୍ତରି ଜଣ ସଦସ୍ୟ ଅଛନ୍ତି । କେବଳ ଆମମାନଙ୍କର ବ୍ୟବସାୟର ବୃଦ୍ଧି ହୋଇନି, ବୃଦ୍ଧି ମଧ୍ୟ ହୋଇଛି ଏ ସହରର । ପଚିଶ ବର୍ଷ ଭିତରେ ଏହି ସହରଟି ଗୋଟିଏ ସବ୍-ଡିଭିଜନରୁ ପରିଣତ ହୋଇଛି ଜିଲ୍ଲାରେ । ସହରର ମଧ୍ୟସ୍ଥଳରୁ ଉଭୟ ଦିଗରେ ପ୍ରାୟ ଦୁଇ କିଲୋମିଟର ଯାଏ ବୃଦ୍ଧି ପାଇସାରିଲାଣି ସହର । ସହରଠାରୁ ସେତେବେଳେ ଦୂରରେ ତିଆରି ହୋଇଥିବା କଲେଜଟି ଏବେ ସହରର କାୟା ବୃଦ୍ଧିରେ ପଶି ଆସିଲାଣି ସହର ଭିତରକୁ । ତେଣୁ ମୋଟାମୋଟି ଭାବରେ କହିବାକୁ ଗଲେ ସିଦ୍ଧିଦାତା ଗଣେଶଙ୍କ କୃପାରୁ ସମସ୍ତଙ୍କର ବ୍ୟାବସାୟିକ ସାଫଲ୍ୟ ଆସିଛି ।

"ହଁ ଯେ—ସେଇଟା ତ ଆପଣ ଦେଖୁଛନ୍ତି । ଆମେ ସମସ୍ତେ ବି ଦେଖୁଛୁ । ଅସଲକଥା କୁହ ରୌପ୍ୟଜୟନ୍ତୀ ପୂଜା କିପରି ହେବ ? କଣେ କିଏ ଟୋକା ବ୍ୟବସାୟୀ ପଛରୁ ଚିତ୍କାର କରି କହିଲା ।

ପୂଜା ଯେମିତି ନୀତିନିଷ୍ଠ ଭାବରେ ଓ ଜାକଜମକରେ ହେଉଛି କରାଯିବ । ଯେହେତୁ ଏଥର ରୌପ୍ୟଜୟନ୍ତୀ ସମାରୋହ ପାଳନ କରାଯିବ, ପୂଜା କମିଟିର ସଭାପତି ହିସାବରେ ମୁଁ ଦୁଇଟି ନୂତନ ପ୍ରସ୍ତାବ ଆପଣମାନଙ୍କ ପାଖରେ ରଖିବି ।

କ'ଣ ସେ ପ୍ରସ୍ତାବ ?

ପ୍ରସ୍ତାବ ଦୁଇଟି ହେଉଛି—ଆମେ ସହରର ଉଭୟ ପଟରେ ଦୁଇଟି ସୁଦୃଶ୍ୟ ତୋରଣ ନିର୍ମାଣ କରିବା ଏବଂ ପୂଜାଦିନ ଦରିଦ୍ର ଭୋଜନର ବ୍ୟବସ୍ଥା କରିବା ।

ଆଉ ମୂର୍ତ୍ତି କଥା ?

ମୂର୍ତ୍ତି କଥା କ'ଣ ? ଦୀର୍ଘ ପଚିଶ ବର୍ଷ ହେଲାଣି ଯେଉଁ ବୃଦ୍ଧଶିଳ୍ପୀ ଦିଗାମ୍ବର ରଣା ତିଆରି କରିଆସୁଛନ୍ତି ମୂର୍ତ୍ତି ସିଏ ତିଆରି କରିବେ । ଅବଶ୍ୟ ଏବର୍ଷ ମୂର୍ତ୍ତିକୁ ପୂର୍ବବର୍ଷମାନଙ୍କ ଅପେକ୍ଷା ଟିକିଏ ବଡ଼କରି ତିଆରି କରିବା ।

ନା—ଆମେ ଏଥିରେ ଏକମତ ନୋହୁଁ । ନୂଆକରି ଦେଶୀ ମଦଦୋକାନପାଇଁ ଲାଇସେନ୍‌ସ ନେଇଥିବା ମଙ୍ଗତୁରାମ ସାହୁ ଛିଡ଼ା ହୋଇ କହିଲା ।

ଆମେ ଏଥିରେ ଏକମତ ନୋହୁଁ, ମାନେ ?

ଆମେ ବୋଇଲେ, ଆମ ଯୁବ-ବ୍ୟବସାୟୀ ସଂଘ ।

ବ୍ୟବସାୟୀ ସଂଘ ଭିତରେ ଗୋଟେ ଯୁବ-ବ୍ୟବସାୟୀ ସଂଘ ଗଢ଼ା ହେଲାଣି କି ?

ହଁ ।

ତେବେ କେଉଁମାନେ ସବୁ ଏହାର ସଦସ୍ୟ ?

ବୃଦ୍ଧ-ବ୍ୟବସାୟୀମାନଙ୍କୁ ଛାଡ଼ିଦେଲେ ଆଉ ସମସ୍ତେ ତ ଏହାର ସଦସ୍ୟ । ଆରେ ଛିଡ଼ା ହୁଅରେ ସମସ୍ତେ ।

ମଙ୍ଗତୁରାମର କଥା ଶୁଣି ଛିଡ଼ା ହୋଇପଡ଼ିଲେ ଯୁବ-ବ୍ୟବସାୟୀମାନେ । ପ୍ରାୟ ତିନିଚତୁର୍ଥାଂଶ ସଦସ୍ୟ ଛିଡ଼ା ହୋଇଯିବାର ଦେଖି ସଭାପତି କହିଲେ, ଯୁବ-ବ୍ୟବସାୟୀମାନେ ତ ସଂଖ୍ୟାଗରିଷ୍ଠ । ତେଣୁ ସେମାନେ କୁହନ୍ତୁ ଗଣେଶପୂଜାର ରୌପ୍ୟଜୟନ୍ତୀ କିପରି ପାଳନ କରାଯିବ ?

ଆମେ ନିଷ୍ପତ୍ତି ନେଇଛୁ ଏଥର ଗଣେଶପୂଜା ଏକ ନୂଆରକମର ହେବ । ସେହି ଚିରାଚରିତ ଗଣେଶ ବସିଥିବେ ମୂଷା ପିଠିରେ ଓ ହାତରେ ଧରିଥିବେ ରାଶିଲଡୁ, ଏଥର ବନ୍ଦ । ଯୁଗ ଆଗେଇଲାଣି । ଏଥର ଗଣେଶ ନୂଆ ଷ୍ଟାଇଲ୍‌ରେ ହେବେ- 'କୌନ୍ ବନେଗା କରୋଡ଼ପତି' ଷ୍ଟାଇଲ୍‌ରେ । ଗଣେଶ ପଚାରୁଥିବେ ପ୍ରଶ୍ନ ଓ ହଟ୍‌ସିଟ୍‌ରେ ବସିଥିବେ ଅମିତାଭବଚ୍ଚନ । ଷ୍ଟେଜ୍‌ଟା ବି ହେବ ସେହି ଷ୍ଟାଇଲ୍‌ରେ ।

ଇଏ କ'ଣ ଗଣେଶପୂଜା ହେବ ନା ଟି.ଭି. ଶୋ' ହେବ ?

ସିଦ୍ଧିଦାତା ଗଣେଶ- ସର୍ବ ଶୁଭ ଓ ଲାଭର ଦେବତା । ଗଣେଶଙ୍କର ଏମିତି ରୂପ ଆପଣମାନେ ବ୍ୟବସାୟୀ ହୋଇ କିପରି କଳ୍ପନା କରିପାରୁଛନ୍ତି ?

କଳ୍ପନା କରୁନୁ—ତାକୁ ରୂପଦେବାପାଇଁ ଆମେ ବ୍ୟବସ୍ଥା କରିଛୁ । କେବଳ ଆପଣମାନଙ୍କ ସମ୍ମତିପାଇଁ ଆମେ ଅପେକ୍ଷା କରିଛୁ ଯାହା ।

ଆପଣମାନେ କ'ଣ ଆଶା କରୁଛନ୍ତି ଯେଉଁ ବ୍ୟବସାୟୀ ସଂଘ ପଚିଶ ବର୍ଷ ହେଲାଣି ନୀତିନିଷ୍ଠଭାବେ ଗଣେଶ ପୂଜା କରିଆସୁଅଛି ଏମିତି ଏକ କଦର୍ଯ୍ୟ ପୂଜା ପଦ୍ଧତିକୁ ସମ୍ମତି ପ୍ରଦାନ କରିବ ?

ଆମର ପ୍ରସ୍ତାବ ଯଦି କାର୍ଯ୍ୟକାରୀ ନ ହୁଏ ତେବେ ପୂଜାକମିଟି ଦୁଇଭାଗ ହେବ - ଯୁବ-ବ୍ୟବସାୟୀ ପୂଜାକମିଟି ଓ ବୃଦ୍ଧ-ବ୍ୟବସାୟୀ ପୂଜାକମିଟି ।

ସଭାପତି କିଛି ସମୟ ନୀରବ ରହିବା ପରେ କହିଲେ— ଯଦି ଆପଣମାନେ ନିଷ୍ପତ୍ତି ନେଇସାରିଛନ୍ତି ଏମିତି ଢଙ୍ଗରେ ପୂଜା କରିବେ ବୋଲି ତେବେ .ପୂଜାକମିଟି ଦୁଇଭାଗ ହୋଇଯାଉ ପଛେ ପୂଜା ନାଆଁରେ ଏମିତି ବ୍ୟଭିଚାରକୁ ଅନ୍ତତଃ ଆମେ ବୟସ୍କ ବ୍ୟବସାୟୀମାନେ ପ୍ରଶ୍ରୟ ଦେଇପାରିବୁ ନାହିଁ ।

ମଙ୍ଗତୁରାମ ସାହୁ ତୁରନ୍ତ ଉଠିପଡ଼ି କହିଲେ—ଭାଇମାନେ ! ନିଷ୍ପତ୍ତି ତ ଶୁଣିଦେଲେ, ଆଉ ବସିଲ କାହିଁକି ? ଉଠ । ଦେଖ ଏଥର ପ୍ରତିଯୋଗିତା କେବଳ ହେବ ନାହିଁ ବୃଦ୍ଧ-ବ୍ୟବସାୟୀ ସଂଘ ଓ ଯୁବ-ବ୍ୟବସାୟୀ ସଂଘ ଭିତରେ । ପ୍ରତିଯୋଗିତା ବି ହେବ ବାପ ଓ ପୁଅ ଭିତରେ—ପୁରାତନ ଶିଳ୍ପୀ ଦିଗାମ୍ବର ମହାରଣା ଓ ତାଙ୍କ ପୁଅ ବିଶିଆ ଓରଫ ବିଶିକେଶନ ମହାରଣା ଭିତରେ । ଦେଖିବା କିଏ ଜିତୁଛି । କଲିକତାରୁ ଟ୍ରେନିଂ ନେଇ ଫେରିଥିବା ବିଶିଆ ନା ତା' ବୁଢ଼ା ବାପ ?

ଧୀରେ ଧୀରେ ଫାଙ୍କା ହୋଇଗଲା ମିଟିଂ । କେବଳ କତିପୟ ବୃଦ୍ଧ ବ୍ୟବସାୟୀ ବସି ରହିଥିଲେ । ସେମାନଙ୍କ ସଂଖ୍ୟାନ୍ୟୂନତାକୁ ଲକ୍ଷ୍ୟକରି ସଭାପତି କହିଲେ—ଏଥିରେ ଭଗ୍ନ ମନୋରଥ ହେବାର କିଛି ନାହିଁ । ଆମେ ପରମ୍ପରା ସହିତ ଚାଲିବା, ସେମାନେ ଚାଲିବେ ପ୍ରଗତିର ସହ । ଆମେ ପୂଜାର ପରମ୍ପରା ଓ ନୀତିନିଷ୍ଠତାକୁ ବଜାୟ ରଖିବା, ସେମାନେ ଅପସଂସ୍କୃତିକୁ ବାହାବା ଦେବେ । ଏଥିରେ ଆମମାନଙ୍କର ବିଜୟ କିମ୍ବା ପରାଜୟ ଭାବ ନ ରହି କେବଳ ଭକ୍ତିଭାବ ରହିଲେ ହେଲା ।

ବ୍ୟବସାୟୀ ସଂଘର ଆଲୋଚନା ଓ ସଂଘ ଭାଗ ହୋଇଯିବା ଖବର ଶିଳ୍ପୀ ଦିଗାମ୍ବର ରଣାଙ୍କ କାନରେ ପଡ଼ିଲା । ସେ ଆସି ନିଜ ତରଫରୁ ସଭାପତିଙ୍କ ପାଖରେ ପ୍ରସ୍ତାବ ଦେଲେ ବିନା ପାରିଶ୍ରମିକରେ ଗଣେଶ ମୂର୍ତ୍ତି ତିଆରି କରିବା ପାଇଁ ।

ସଭାପତି ପଚାରିଲେ—ବିନା ପାରିଶ୍ରମିକରେ କାହିଁକି ?

ଦୀର୍ଘ ଚବିଶ ବର୍ଷ ହେଲା ମୁଁ ପାରିଶ୍ରମିକ ନେଇ ଆସିଅଛି । ଏଥର ପୂଜାର ରୌପ୍ୟଜୟନ୍ତୀ ଉତ୍ସବ । ତେଣୁ ମୋ ତରଫରୁ ମୋର ପାରିଶ୍ରମିକ ହେବ ପୂଜା କମିଟିକୁ ଚାନ୍ଦା । ତା'ପରେ ମୋର ଯାହା ବୟସ ହେଲାଣି ହୁଏତ ଆରଥରକୁ ବଞ୍ଚିଥିବି କି ନାହିଁ । ତେଣୁ ଭାବୁଛି ଶେଷଥର ମୂର୍ତ୍ତିଗଢ଼ାଟି ବିନା ପାରିଶ୍ରମିକରେ କରିବି ।

ତମର ପୁଅ କ'ଣ ଗୋଟେ ବଡ଼ ଶିଳ୍ପୀ ହୋଇଗଲାଣି ଦିଗାମ୍ବର ?

ପ୍ରତ୍ୟେକ ଶିଳ୍ପୀର ଏକ ନିଜସ୍ୱ ଦୃଷ୍ଟିଭଙ୍ଗୀ ଓ ଶିଳ୍ପକଳାର ଶୈଳୀ ଥାଏ । ଏଥିରେ କାହାକୁ ବଡ଼ ବା ସାନ କହି ହେବନି । ମୁଁ ବି ଚାହୁଁଥିଲି ମୋ ପୁଅ ଏ କଳାରେ କିଛି ଅଧିକ ଟ୍ରେନିଂ ନେବାପାଇଁ । ମାତ୍ର ସେ ଟ୍ରେନିଂ ନେଇ ଫେରିବା ପରେ ଭଙ୍ଗୀର ପରିବର୍ତ୍ତନ ଘଟିଛି । ଯେଉଁଟାକୁ ସେ ସମୟର ଡାକ ବୋଲି କହୁଛି । ମାତ୍ର ମୋର ଦୃଢ଼ବିଶ୍ୱାସ ଜଣେ ସତ୍‌ଶିଳ୍ପୀ ସମୟର ଡାକସହ ତାଳ ଦେଇ ଚାଲେନା, ସମୟକୁ ଡାକିଆଣେ ତା' ସହ ତାଳଦେଇ ଚାଲିବାକୁ। ସେ ସମୟ ତା'ର ଆସିବ ନିଶ୍ଚୟ—ଯେତେବେଳେ ସେ ଆଉ କାହାକୁ ଅନୁକରଣ ନ କରି ନିଜ ଅନ୍ତର୍ଦୃଷ୍ଟିରେ ମୂର୍ତ୍ତି ଗଢ଼ିବ ।

ହଉ, କାମ ଆରମ୍ଭ ହେଉ । ଦେଖ ଏଇଟା ତମପାଇଁ ବି ଗୋଟେ ଚାଲେଞ୍ଜ୍ ।

ଉଭୟ ସଂଘର ମୂର୍ତ୍ତିଗଢ଼ା କାମ ଚାଲିଲା ଧୁମ୍‌ଧାମ୍‌ରେ । ଦିଗାମ୍ବର ମହାରଣା ତାଙ୍କର ସମସ୍ତ ଶିଳ୍ପକଳାର ଦକ୍ଷତା ଓ ଶିଳ୍ପୀ ହାତର ଯାଦୁକରୀର ଶେଷ ନିର୍ଯ୍ୟାସ ଦେଇ ଗଣେଶ ମୂର୍ତ୍ତି ଗଢ଼ିବାରେ ମଗ୍ନ ଥିଲେ । ତାଙ୍କ ଭିତରେ ଯଦିଓ ପୁଅ ସହ ପ୍ରତିଦ୍ୱନ୍ଦ୍ୱିତା କରିବାର ମନୋଭାବ ନ ଥିଲା ତଥାପି ସେ ଚାହୁଁଥିଲେ ଏ କଳାକୁ କଳାତ୍ମକ ଭାବେ ପରିବେଷଣ କରି ଅପସଂସ୍କୃତିର ଆହ୍ୱାନକୁ ମୁକାବିଲା କରିବା ପାଇଁ, ଅପରପକ୍ଷରେ ପୁଅ ଅଣ୍ଟାଭିଡ଼ି ଲାଗିଥିଲା ବାପ୍ ସେ ବେଟା ଜ୍ୟାଦାକୁ ପ୍ରମାଣିତ କରିବାକୁ । ତେଣୁ ସେ ବି ଜାନ୍ ଲଗାଇ ଦେଇଥିଲା ଏକ ନବସଂସ୍କୃତିର ବାର୍ତ୍ତାବହ ରୂପେ ଗଣେଶଙ୍କୁ ଉପସ୍ଥାପିତ କରିବାପାଇଁ ।

ପୁଅର ମୂର୍ତ୍ତି ଗଢ଼ିବା ଦିନଠାରୁ ଦିଗାମ୍ବରଙ୍କ କାନରେ ପଡୁଥିଲା ସେଠାରେ ଚାଲିଥିବା ସାଜସଜ୍ଜା ଓ ନୂଆଧରଣର ପରିକଳ୍ପନା କଥା । ସେ ମନେ ମନେ ହସୁଥିଲେ ଗୋଟେ ଟି.ଭି. ଶୋ'ର ଭେଳିକି ଦେଖାଇ ତିଆରି ଚାଲିଥିବା ଗଣେଶ ମୂର୍ତ୍ତିପାଇଁ ଏବଂ ଭାବୁଥିଲେ ଈଶ୍ୱରୀୟ ବିଶ୍ୱାସ ଓ ସଂସ୍କୃତିକୁ ଅସ୍ଥିମଜ୍ଜାରେ ସାଇତି ରଖିଥିବା ଆମର ଭକ୍ତ ଓ ଦର୍ଶକମାନେ ତା'ର ଏ ଭେଳିକିକୁ ନିଶ୍ଚୟ ପ୍ରତ୍ୟାଖ୍ୟାନ କରିବେ ଏବଂ ପୁଅ ପୁଣି ଫେରିଆସିବ ଅସଲ କଳା ପାଖକୁ ।

ମାତ୍ର ସେମିତି କିଛି ଘଟୁ ନ ଥିଲା । ପୂଜାଦିନ ଯେତିକି ପାଖେଇ ପାଖେଇ ଆସୁଥିଲା ଯୁବ-ବ୍ୟବସାୟୀ ସଂଘର ନୂଆଧରଣର ମୂର୍ତ୍ତି ଓ ମୂର୍ତ୍ତିସଜ୍ଜାର ଆଲୋଚନା ସେତିକି ବଢ଼ି ବଢ଼ି ଚାଲିଥିଲା ସାରା ସହରରେ । କେତେକ ତ କହୁଥିଲେ ଏବେ ଆଲୋକସଜ୍ଜା ହୋଇନି, ହେଲା ପରେ ଦେଖିବ ଗୋଟିଏ ସ୍ୱପ୍ନରାଜ୍ୟକୁ ନେଇଯିବ

ସେ ମଞ୍ଚ । ଯାହାହେଲେ ବି ଶିଳ୍ପୀର ପୁଅ ସିଏ, ପୁଣି ଆଧୁନିକ ଶିଳ୍ପକଳାର ବିଶେଷ ଧରଣର ଟ୍ରେନିଂ ନେଇଛି କଲିକତାରେ ।

ଉପଗତ ହେଲା ପୂଜାଦିନ । ନୈଷ୍ଠିକ ବ୍ରାହ୍ମଣ ପବିତ୍ର ମନ୍ତ୍ରୋଚ୍ଚାରଣରେ ବୃଦ୍ଧ-ବ୍ୟବସାୟୀ ସଂଘର ପୂଜାର୍ଚ୍ଚନା ଆରମ୍ଭ ହେଲା । ଜୀବନ୍ୟାସ ପୂଜା ଆରମ୍ଭ କରିବାକୁ ଯେତେବେଳେ ମୂର୍ତ୍ତି ମୁହଁରୁ କପଡ଼ା ଖୋଲାଗଲା, ବ୍ରାହ୍ମଣ ଚମକି ପଡ଼ିଲେ ମୂର୍ତ୍ତିକୁ ଦେଖି । ସେ ମନେ ମନେ ବିସ୍ମୟ ହେଉଥିଲେ ଏ ମୂର୍ତ୍ତି ବା ସ୍ୱୟଂ ଗଣେଶ ଆସି ଛିଡ଼ା ହୋଇଛନ୍ତି ତାଙ୍କ ସମ୍ମୁଖରେ । ପାଖରେ ଛିଡ଼ାହୋଇଥିବା ଶିଳ୍ପୀଙ୍କୁ ତାରିଫ୍ କରି କହିଲେ—ମାନିଗଲି ଦିଗାମ୍ବର! ତୁମ ଶିଳ୍ପୀ ହାତର ଯାଦୁକରୀ କରାମତିକୁ ।

ସେପଟେ ଯୁବ-ବ୍ୟବସାୟୀ ସଂଘର ପୂଜାର୍ଚ୍ଚନାପାଇଁ ଖୋଜା ଚାଲିଥାଏ ବ୍ରାହ୍ମଣ । ଯେଉଁ ଅଳ୍ପ କେତେଜଣ ବୟସ୍କ ବ୍ରାହ୍ମଣ କର୍ମକର୍ମାଣି ଓ ଯଜମାନୀ କାର୍ଯ୍ୟ କରୁଥିଲେ ସମସ୍ତେ ମନାକରିଦେଲେ ପୂଜା କରିବାପାଇଁ । ସେମାନଙ୍କ ଯୁକ୍ତି ଥିଲା—ଆମେ ଦେବାହନ କର । ଦେବତାଙ୍କ ସହ ରହିଥିବା ଜଣେ ମଣିଷର ମୂର୍ତ୍ତିକୁ ଆମେ ଆବାହନ କିମ୍ବା ପୂଜାର୍ଚ୍ଚନା କରିପାରିବୁ ନାହିଁ ।

ଏ କଥା ଶୁଣି ଯୁବ-ବ୍ୟବସାୟୀ ସଂଘର ସଭାପତି ତାଙ୍କ ସଦସ୍ୟମାନଙ୍କୁ କହିଲେ—ଇଏ ହେଉଛି ବୃଦ୍ଧ-ବ୍ୟବସାୟୀ ସଂଘର ଆମ ବିରୋଧରେ ଏକ ରାଜନୀତି । ହଉ ଦେଖିବା, ସେମାନେ ଡାଳେ ଡାଳେ ଗଲେ ଆମେ ବି ପତ୍ରେ ପତ୍ରେ ଯିବାର ଲୋକ ।

ମାଧବ ପାଣିଗ୍ରାହୀ ଯିଏ କି ନୂଆକରି ଜୋତାଦୋକାନ ଖୋଲିଥିଲା, କହିଲା—ଇଏ ଗୋଟାଏ କଥା । ଏଥିପାଇଁ ଏତେ ଚିନ୍ତା । ମୁଁ ବି ବ୍ରାହ୍ମଣ-ମୁଁ ପୂଜା କରିଦେବି ।

ସଭାପତି ପଚାରିଲେ—ମନ୍ତ୍ର ପଙ୍କ୍ତି ଶିଖିଛ ?

ମନ୍ତ୍ର ପଂକ୍ତି ଶିଖିନି ଯେ ହେଲେ ବହିରେ ତ ଅଛି । ବହି ପଢ଼ି ମୁଁ ପୂଜା କରିଦେବି ।

କିଏ ଜଣେ ଥଟ୍ଟାରେ ପଚାରିଲେ—ଆରେ ତୋର ପଇତା ଅଛି ତ ?

ନିଜ ପଇତା ସମ୍ପର୍କରେ ସନ୍ଦିହାନ ମାଧବ ଶାର୍ଟ ତଳେ ହାତ ପୂରାଇ ପଇତା ଅଛି କି ନାହିଁ ଅଣ୍ଡାଳି ଦେଖିଲା । ସତକୁ ସତ ତା'ର ପଇତା ନ ଥିଲା । ମାତ୍ର ନିଜର ପଇତା ନ ଥିବା କଥା ନ ଜଣାଇ ସେ କହିଲା—ତମେମାନେ

ପୂଜାସାମଗ୍ରୀ ଯୋଗାଡ଼ କର । ମୁଁ ନୂଆ ପଇତା ବଦଳାଇ ଲୁଗାପଟା ପିନ୍ଧି ଆସୁଛି । ଆରେ କିଛି ନ ହେଲେ ବି ବ୍ରାହ୍ମଣ ହାତରେ ନଡ଼ିଆଟିଏ ପିଟିଦେଲେ ପୂଜା ହୋଇଗଲା ଜାଣ ।

ମାଧବ ଘରକୁ ଯାଇ ଲୁଗାପଟା ବଦଳାଇ ପୁରୋହିତ ବେଶରେ ଆସି ପହଞ୍ଚିଲା । ତାକୁ ଦେଖି କେତେକେ କହିଲେ— ଆବେ ତୁ ତ ପୂରା ପୁରୀପଣ୍ଡାଙ୍କ ପରି ଲାଗୁଛୁ ।

ଲାଗୁଛି ନୁହେଁ—କାମ ବି ସେମିତି କରିବି ଦେଖ । ଘରୁ ଖୋଜାଖୋଜି କରି ପୁରୋହିତ କର୍ମକାଣ୍ଡ ବହିଟିଏ ବି ଆଣିଛି । ଦେଖ, ପୂଜା କେମିତି କରୁଛି ।

ମାଧବ ଆରମ୍ଭ କରିଦେଇଥିଲା ପୂଜା । ତା' ପୂଜାପଦ୍ଧତିରେ ଅହେତୁକ ବିଳମ୍ବ ଦେଖି କେତେ ଜଣ ହୋ ହଲ୍ଲା ଆରମ୍ଭ କରି କହିଲେ—ହୋ ନନା ! ସେତିକି ଥାଉ । ଏବେ ନଡ଼ିଆ ଭାଙ୍ଗ-ପୁଷ୍ପାଞ୍ଜଳି ଦିଅ । ଗାନାଫାନା ଗୋଟେ ଲାଗିବନା !

ନଡ଼ିଆ ଭାଙ୍ଗିସାରି ପୁଷ୍ପାଞ୍ଜଳି ପ୍ରଦାନପାଇଁ ଡାକ ପକାଇଲା ମାଧବ । ପୁଷ୍ପାଞ୍ଜଳି ପରେ ସେ ଘୋଷଣା କଲା ପୂଜା ଶେଷ ହେଲା । ସମସ୍ତେ ଯେପରି ଉତ୍କଣ୍ଠିତ ହୋଇ ଅପେକ୍ଷା କରିଥିଲେ ସେଇ ମୁହୂର୍ତ୍ତକୁ । ସଙ୍ଗେ ସଙ୍ଗେ ଆରମ୍ଭ ହୋଇଗଲା ଗାନା, ଆଲୋକର ବର୍ଣ୍ଣାଳୀ ଓ ଡିସ୍‌କୋ ଗୀତର ଲହରୀରେ ସ୍ଥାନଟି ଲାଗିଲା ଯେମିତି ପୂଜାସ୍ଥଳୀ ନୁହେଁ, ପ୍ରେକ୍ଷାଳୟଟିଏ ।

ଗଣେଶଙ୍କୁ ପୂଜାର୍ପଣ କରିବାର ମାନସିକତାରେ ଥିବା କତିପୟ ଭକ୍ତଙ୍କୁ ଛାଡ଼ିଦେଲେ ଆଉ ସମସ୍ତଙ୍କର ଭିଡ଼ ଲାଗିଗଲା ଯୁବ-ବ୍ୟବସାୟୀ ପୂଜାମଣ୍ଡପ ପାଖରେ । ଗହଳିଚହଳି ଫାଟି ପଡୁଥିଲା ସେଠାରେ । କିଛି ଯୁବକଙ୍କର ଉନ୍ମତ୍ତ ନୃତ୍ୟ ସାଙ୍ଗକୁ ସେହି ଲୋକପ୍ରିୟ ଟି.ଭି. ଶୋ'ର ପ୍ରଶ୍ନ ଓ ସଂଯୋଜନା ବାନ୍ଧି ରଖୁଥିଲା ଦର୍ଶକମାନଙ୍କୁ । ସମସ୍ତେ ଭୂରି ଭୂରି ପ୍ରଶଂସା କରୁଥିଲେ ଆଲୋକସଜ୍ଜା ଓ ମଞ୍ଚସଜ୍ଜାର କଳା-କୌଶଳକୁ । ଅନେକ ଦର୍ଶକ ତ ନିଜକୁ କୃତାର୍ଥ ମଣୁଥିଲେ ଏମିତି ଏକ ନୂତନ ଶୈଳୀର ଗଣେଶ ମେଢ଼ ଦେଖି । ଲୋକମାନଙ୍କର ଭିଡ଼ ଦେଖି ଉତ୍ସାହୀ ହୋଇଉଠୁଥିଲେ ଯୁବ-ବ୍ୟବସାୟୀଗଣ । ସେମାନଙ୍କ ଉତ୍ସାହ ଆହୁରି ବଢ଼ାଇବାକୁ ସଭାପତି କହିଲେ—ଖାଲି ରାତି ହୋଇଯାଉ, ଦେଖିବ ଗୁହ, ସେଠାରେ ମାଛି ମାରିବାକୁ ଲୋକ ନ ଥିବେ ।

ସତକୁ ସତ ରାତିବେଳକୁ କତିପୟ କର୍ମକର୍ତ୍ତା ଓ ପୂଜାରୀଙ୍କୁ ଛାଡ଼ିଦେଲେ ସେଠାରେ ଆଉ ଭିଡ଼ ନ ଥିଲା । ପୂଜାମଣ୍ଡପ ଲାଗୁଥିଲା ପୂଜା ପରଦିନ ବିସର୍ଜନପାଇଁ ଅପେକ୍ଷାରେ ଥିବା ମେଢ଼ ପରି । ଦର୍ଶକମାନଙ୍କର ନୈରାଶ୍ୟଜନକ

ଉପସ୍ଥିତି ଦେଖି ଭିତରେ ଭିତରେ ଭାଙ୍ଗିପଡୁଥିଲେ ଦିଗାମ୍ବର ମହାରଣା । ନିଜର ସମସ୍ତ ମୂର୍ତ୍ତି କଳାର ଚତୁରୀ ନେଇ ଗଢ଼ିଥିବା ଗଣେଶ ମୂର୍ତ୍ତି ତାଙ୍କୁ ଲାଗୁଥିଲା ଯେମିତି ଛିଡ଼ା ହୋଇଛନ୍ତି ପାଳଭୂତ ପରି । ସେ ବିମର୍ଷ ହୋଇ ବସିଥିବା ବେଳେ ପଞ୍ଚାଏ ଯୁବଦର୍ଶକ ଆସିଲେ ମଣ୍ଡପ ପାଖକୁ । ସେମାନଙ୍କୁ ଦେଖି ତାଙ୍କ ମନରେ ସାମାନ୍ୟ ଆଶାର କିରଣ ଦେଖାଦେଲା । ସେ ଉତ୍କଣ୍ଠିତ ହୋଇ ଅପେକ୍ଷା କଲେ ମୂର୍ତ୍ତି ଦେଖିସାରିବା ପରେ ସେମାନଙ୍କର ତୁଳନାତ୍ମକ ମତାମତ କ'ଣ ଜାଣିବାପାଇଁ ।

ସେମାନେ ମୂର୍ତ୍ତି ଦେଖିଲେ । ସମାନ୍ୟତମ କଳାତ୍ମକ ରୁଚି ଥିବା ପିଲାଟିଏ କହିଲା- ମୂର୍ତ୍ତି ଏଠାରେ ଖୁବ୍ ସୁନ୍ଦର ହୋଇଛନ୍ତି, ମାତ୍ର ସେଠିକା ସାଜସଜ୍ଜା ଓ ଆଧୁନିକ ଶୈଳୀ ପାଖରେ ଏ ମୂର୍ତ୍ତି ନିଷ୍ପ୍ରଭ ହୋଇ ପଡୁଛନ୍ତି । ଯୁଗ ସହ ତାଳଦେଇ ସେଠିକାର ମୂର୍ତ୍ତି ଆଉ ଏଠିକା ମୂର୍ତ୍ତି ସେହି ପୁରାତନ ଢାଞ୍ଚାରେ ।

ତା' ସାଙ୍ଗରେ ଆସିଥିବା ଆଉ ଜଣେ ଯୁବକ କହିଲା— ଚାଲ ଚାଲ, ଏଠି ଆଉ ସମୟ ବରବାଦ୍ କରି ଲାଭ ନାହିଁ । କେତେକ ବୁଢ଼ା ଭକ୍ତଙ୍କୁ ଛାଡ଼ି ଦେଲେ ଏଠି ମାଲ୍ କାହାନ୍ତି ବେ ? ଜାଣିଛୁ, ମଙ୍ଗତୁରାମ ଆଜି ଘୋଷଣା କରିଛି ରାତିରେ ଦେଶୀମଦର ବନ୍ୟା କରିବ ଫ୍ରି' ରେ । ଚାଲ ସେଠି ଯାଇ ଖାତାରେ ନାଆଁଟା ଲେଖାଇ ଦେଇଥିବା- ଅନ୍ତତଃ ପୂଜାଟା ଉପଭୋଗ୍ୟ ହୋଇଯିବ ।

ଯୁବ-ବ୍ୟବସାୟୀ ସଂଘ ପୂଜାମଣ୍ଡପରେ ରାତିସାରା ଚାଲିଲା ନୃତ୍ୟ ଓ ଗୀତର ଆସର । ମଦର ପ୍ରାବଲ୍ୟରେ ମତୁଆଲା ଯୁବକମାନଙ୍କର ଡିସ୍କୋ ନାଚ ଓ ମାଇକ୍‌ର କାନଫଟା ଫିଲ୍ମଗୀତରେ ଲାଗୁଥିଲା ସହରଟା ଯେମିତି ଦୁଲୁକୁଛି । ଦର୍ଶକମାନଙ୍କ ଅସମ୍ଭବ ଭିଡ଼ ଦେଖି ଯୁବ-ବ୍ୟବସାୟୀମାନେ ପୁଲକିତ ହେଉଥିଲେ ଯେ ସେମାନେ ବୁଢ଼ାମାନଙ୍କୁ ଗୋଟେ ସବକ୍ ଶିଖାଇ ପାରିଛନ୍ତି ବୋଲି । ସଂଘର ସଭାପତି ତ ଘୋଷଣା କଲା ଭଳି କହିଲେ- ଦେଖ, ପୌର ପରିଷଦ ପକ୍ଷରୁ ଶ୍ରେଷ୍ଠ ମେଢ଼ ଓ ପୂଜାମଣ୍ଡପପାଇଁ ଦିଆଯାଉଥିବା ପୁରସ୍କାରଟି ଆମେ ନିଶ୍ଚୟ ପାଇବା । ସେଇଟା ମିଳିଗଲା ପରେ ଏ ବୁଢ଼ାମାନେ ଆସନ୍ତା ବର୍ଷକୁ ଆମ ପଛରେ ଗୋଡ଼ାଇବେ ମିଶିବାପାଇଁ ।

ପରଦିନ ବିସର୍ଜନ । ବିସର୍ଜନ ବେଳକୁ ବୃଦ୍ଧ-ବ୍ୟବସାୟୀ ସଂଘ ପାଖରେ କେହି ନ ଥିଲେ ବିସର୍ଜନ ପଟୁଆର କରିବାପାଇଁ । ଖୁବ୍ ନିରାଡ଼ମ୍ବର ଭାବରେ ଗୋଟିଏ ଟ୍ରଲି ଉପରେ ଗଣେଶଙ୍କୁ ବସାଇ, ପାରିଶ୍ରମିକ ଦିଆଯାଇ ଅଣାଯାଇଥିବା କିଛି ଘଣ୍ଟୁଆ ଓ ବାଜାବାଲାଙ୍କ ସାହାଯ୍ୟରେ ନିଆଯାଇଥିଲା ରାଜା ପୋଖରୀକୁ ବିସର୍ଜନପାଇଁ । ସେମାନଙ୍କ ସହ ଚାଲିଥିଲେ ଶିଳ୍ପୀ ଦିଗାମ୍ବର ମହାରଣା । ତାଙ୍କୁ ଓ

ତାଙ୍କ ମନୋଭାବକୁ ଦେଖିଲେ ଲାଗୁଥିଲା ସେ ଯେମିତି ଭସାଣି ଉତ୍ସବରେ ଯାଉ ନାହାନ୍ତି-ଯାଉଛନ୍ତି ନିଜ ପତ୍ନୀର ଶବସତ୍କାରପାଇଁ ଅହ୍ୟ ଡେଙ୍ଗୁରା ବଜେଇ ବଜେଇ ।

ଦିଗାମ୍ବର ମହାରଣା ବି ମନେ ମନେ ନିଷ୍ପତ୍ତି ନେଇସାରିଥିଲେ ଗଣେଶଙ୍କ ବିସର୍ଜନ ସହ ସେ ବି ଉଝେଇ ଦେବେ ନିଜ ଶିଳ୍ପୀ ଜୀବନର ଶିଳ୍ପକଳାର ଦକ୍ଷତାକୁ । ଏବେ ସରିଗଲା ତାଙ୍କର ଯୁଗ । ଆରମ୍ଭ ହୋଇଗଲା ନବଯୁଗ । ଏ ଯୁଗ ତାଙ୍କୁ ଜବରଦସ୍ତ ବାହାର କରିଦେବା ପୂର୍ବରୁ ସେ ନିଜେ ନିଜେ ହିଁ ଦୂରେଇ ଯିବାଟା ଭଲ । ତେଣୁ ବିସର୍ଜନ ସମୟରେ ସେ ଟେକିଥିଲେ ଜଳତର୍ପଣ ନିଜର କଳା ହରଣପାଇଁ ।

ବିସର୍ଜନ ସାରି ବିଷଣ୍ଣ ଚିତ୍ତରେ ଫେରୁଥିଲେ ଦିଗାମ୍ବର ମହାରଣା । ଫେରିବା ବାଟରେ ଦେଖିଲେ ସହରରେ ଅସମ୍ଭବ ଭିଡ଼, ଯୁବ-ବ୍ୟବସାୟୀ ସଂଘର ମୂର୍ତ୍ତି ବିସର୍ଜନପାଇଁ ।

ଭିଡ଼କୁ ଶୃଙ୍ଖଳିତ କରିବାପାଇଁ ପୋଲିସକୁ ମଧ ବହୁ ପରିଶ୍ରମ କରିବାକୁ ପଡୁଥିଲା । ଭିଡ଼ ମଧ୍ୟରେ ମଦିରାସକ୍ତ ଯୁବକମାନେ ନିଜେ ଅଣାୟତ୍ତ ହେବା ସହ ଅଣାୟତ୍ତ କରିପକାଉଥିଲେ ଭିଡ଼କୁ । ଏପର୍ଯ୍ୟନ୍ତ ସେ ଶୁଣି ଆସିଥିଲେ ପୁଅର ଶିଳ୍ପକଳାର ଦକ୍ଷତା ବିଷୟରେ । ମାତ୍ର ଦେଖି ନ ଥିଲେ ସ୍ୱ-ଚକ୍ଷୁରେ । ହଠାତ୍ ତାଙ୍କର ଇଛା ହେଲା ବିସର୍ଜନ ପୂର୍ବରୁ ଅନ୍ତତଃ ଥରେ ଦେଖିନେବା ଉଚିତ ପୁଅର କାରିଗରୀ କୌଶଳକୁ । ତେଣୁ ସେ ଭିଡ଼ ଭିତରେ ଗଳି ଗଳି ବାଟ କଢ଼ାଇ କଢ଼ାଇ ଚାଲିଥିଲେ ମୂର୍ତ୍ତି ପାଖକୁ - ପାଖରୁ ଥରେ ଦେଖିନେବେ ପୁଅ ହାତର କରାମତି । ସେ ମୂର୍ତ୍ତି ପାଖରେ ପହଞ୍ଚିଛନ୍ତି କି ନାହିଁ—କର୍ମକର୍ତ୍ତାଙ୍କ ମଧ୍ୟରୁ କିଏ ଜଣେ ଚିହ୍ନାଇଲା—ହେଇ ଆସିଗଲେ ଆମର ପୂର୍ବତନ ଶିଳ୍ପୀ ଦିଗାମ୍ବର ମହାରଣା । ଯାହାଙ୍କର ମୂର୍ତ୍ତିକଳାକୁ ଦୀର୍ଘ ପଚିଶ ବର୍ଷ ଧରି ଦେଖିଆସିଛି ଏ ସହର । ଏବେ ସେ ଦେଖିବେ ତାଙ୍କ ପୁଅର ଶିଳ୍ପକଳାକୁ । ଆରେ ମଉସାଙ୍କୁ ଉପରକୁ ଉଠାଇ ଆଣ— ସେ ଦେଖନ୍ତୁ ପୁରାତନ ଯୁଗର ଶେଷ ହୋଇ ନୂତନ ଯୁଗ କିପରି ଆରମ୍ଭ ହୋଇଛି ।

ତା' କଥା ସରିଛି କି ନାହିଁ କେତେଜଣ ଯୁବକ ତାଙ୍କୁ ଶୂନ୍ୟେ ଶୂନ୍ୟେ ଟେକିଦେଲେ ଟ୍ରକ୍ ଉପରକୁ । ଟ୍ରକ ଉପରେ ପହଞ୍ଚି ସେ ଚାହିଁଲେ ପୁଅର ହାତ ତିଆରି ମୂର୍ତ୍ତିଆଡ଼େ । ସେ ମୂର୍ତ୍ତିକୁ ଭଲଭାବରେ ନିରୀକ୍ଷଣ କରିବା ପୂର୍ବରୁ ଜଣେ କିଏ କହିଲା—ନା ମଉସା ! ସେଠୁ ଦେଖିଲେ ଠିକ୍ ଜାଣିପାରିବେ ନାହିଁ । ଆରେ,

ଆଉ ଗୋଟେ ହଟ୍‌ସିଟ୍ ଦିଅବେ ମଉସାଙ୍କପାଇଁ । ସଙ୍ଗେ ସଙ୍ଗେ ଗୋଟେ ହଟ୍‌ସିଟ୍‌ରେ ବସାଇ ଦିଆଗଲା ତାଙ୍କୁ ।

ଖାଲି ବସିଲେ କ'ଣ ଚଳିବ କହି ଜଣେ ତାଙ୍କ ହାତରେ ଧରାଇଦେଲା ଏକ ପୂର୍ଣ୍ଣ ବୋତଲ । ତାଙ୍କ ହାତରେ ବୋତଲଟି ଧରାଇଦେଇ ଉଦ୍‌ଭ୍ରାନ୍ତ ଯୁବକଜଣକ କହିଲା—ହୋଇଯାଉ ମଉସା । ଏ ସାରି ଚିଜ୍ ଗମ୍ ଭୁଲାନେ କେ ଲିଏ । ଡେରି କାହିଁକି ? ସେ କୌଣସି ଉତ୍ତର ଦେବା ପୂର୍ବରୁ ସେ ତାଙ୍କ ମୁହଁରେ ବୋତଲଟି ଲଗାଇ ବୋତଲର ପଛପଟକୁ ଟେକି ଧରିଲା । ଏସବୁ ଏତେ ଶୀଘ୍ର ଶୀଘ୍ର ଘଟୁଥିଲା ଯେ ସେ କୌଣସିଟିକୁ ପ୍ରତିରୋଧ କରିବାକୁ ଅବକାଶ ପାଉ ନ ଥିଲେ । ବିନା ପ୍ରତିରୋଧରେ ଗୋଟିଏ ବୋତଲ ଉଦରସ୍ଥ କରି ସେ କହିଲେ—ଏତିକି ଯଥେଷ୍ଟ ନୁହେଁ - ଆଉ ଗୋଟେ ।

ମାତ୍ରାଧିକ ଭାବେ ପିଇସାରିବା ପରେ ଦିଗାମ୍ବର ମହାରଣା ଅନୁଭବ କଲେ ତାଙ୍କର ପେଟଟା ଅସମ୍ଭବ ଭାବେ ବଡ଼ ହୋଇ ହୋଇ ଯାଉଛି । ଧୀରେ ଧୀରେ ତାଙ୍କ ନାକପାଖରୁ ଲମ୍ବିଆସୁଛି ଏକ ଥୋଡ଼ଟିଏ । ଯୁବକମାନେ ତାଙ୍କୁ ଦିଶୁଥିଲେ ମୂଷା ପରି ଓ ସେ ହାତରେ ଧରିଥିବା ମଦବୋତଲଟି ଗୋଟେ ରାଶିଲଡ଼ୁ ପରି । ସେ ଧୀରେ ଧୀରେ ରୂପାନ୍ତରିତ ହୋଇଯାଉଥିଲେ ଗଣେଶରେ ଏବଂ ବରଦା ମୁଦ୍ରାରେ ହାତଟିଏ ଟେକିଲେ ଜଗତର କଲ୍ୟାଣପାଇଁ ।

ପରଦିନ ମ୍ୟୁନିସିପାଲିଟି ତରଫରୁ ଆୟୋଜିତ ହୋଇଥିଲା ସମ୍ବର୍ଦ୍ଧନା ଓ ପୁରସ୍କାର ଉତ୍ସବ । ସହରରେ ହୋଇଥିବା ପୂଜାମଣ୍ଡପ, ମୂର୍ତ୍ତିମାନଙ୍କୁ ବଛାଯାଇ ଏହାର ଆୟୋଜକ ଓ ମୂର୍ତ୍ତିକାରଙ୍କୁ ସମ୍ମାନିତ ଓ ପୁରସ୍କୃତ କରିବାର ଅଭିପ୍ରାୟ ନେଇ । ପୌରସଭା ଗୃହଟି ସମ୍ପୂର୍ଣ୍ଣ ଭରପୂର ଥିଲା । ସମସ୍ତେ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରିଥିଲେ ପୁରସ୍କାର ଉଦ୍‌ଘୋଷଣାକୁ । ଯୁବ-ବ୍ୟବସାୟୀମାନେ ପ୍ରଚୁର ଆତ୍ମବିଶ୍ୱାସୀ ଥିଲେ ଯେ ସେମାନଙ୍କର ପୂଜାମଣ୍ଡପ ମୂର୍ତ୍ତି ଏଥର ନିଶ୍ଚୟ ଶ୍ରେଷ୍ଠ ହେବ । ସେଥିପାଇଁ ସେମାନେ ଆନୁଷଙ୍ଗିକ ପ୍ରସ୍ତୁତି କରି ଆସିଥିଲେ ମଧ୍ୟ ସଦଳବଳେ । ବିଚାରକ ମଣ୍ଡଳୀର ଅଧ୍ୟକ୍ଷ କ'ଣ କହୁଥିଲେ ଏ ବର୍ଷର ମୂର୍ତ୍ତି ସାଜସଜ୍ଜା ଓ ପୂଜାମଣ୍ଡପରେ ଶାନ୍ତିଶୃଙ୍ଖଳା ବିଷୟରେ ସେକଥା ଶୁଣିବାକୁ ତାଙ୍କର ଧୈର୍ଯ୍ୟ ନ ଥିଲା । ସେମାନେ କେବଳ ଅପେକ୍ଷା କରିଥିଲେ ଉଦ୍‌ଘୋଷଣାକୁ ।

ମାତ୍ର ବିଚାରକ ମଣ୍ଡଳୀର ଅଧ୍ୟକ୍ଷଙ୍କ ଉଦ୍‌ଘୋଷଣା ତାଙ୍କୁ ନିରାଶ କରିଥିଲା— ଯେତେବେଳେ ସେ ଘୋଷଣା କଲେ ଏ ବର୍ଷ କୌଣସି ପୂଜାମଣ୍ଡପ ନୁହେଁ କେବଳ ଶିଳ୍ପୀ ଦିଗାମ୍ବର ମହାରଣା ହିଁ ଶ୍ରେଷ୍ଠ ଶିଳ୍ପୀର ପୁରସ୍କାର ପାଇବେ ।

ହଠାତ୍ ସଭାଗୃହର ପରିବେଶ ହୋଇଗଲା ସ୍ତବ୍ଧ ଓ ଶାନ୍ତ । ଯୁବ-ବ୍ୟବସାୟୀମାନେ କେବଳ ପରସ୍ପରର ମୁହଁ ଚୁହାଁଚୁହିଁ ହେଉଥିଲେ ।

ଅଧ୍ୟକ୍ଷ ଅନୁରୋଧ ଜଣାଇଲେ ଶିଳ୍ପୀ ଦିଗାମ୍ବର ମହାରଣାଙ୍କୁ ମଞ୍ଚ ଉପରକୁ ଆସି ପୁରସ୍କାର ଗ୍ରହଣ କରିବାପାଇଁ ।

ସମସ୍ତେ ଏପଟ ସେପଟ ଚାହୁଁଥିଲେ ଶିଳ୍ପୀ କେଉଁଠି ଅଛନ୍ତି ବୋଲି ।

ବାରମ୍ବାର ଉଦ୍‌ଘୋଷଣା ସତ୍ତ୍ୱେ ଶିଳ୍ପୀ ଆସି ନ ଥିଲେ ମଞ୍ଚ ଉପରକୁ ।

ଏହି ସମୟରେ କିଏ ଜଣେ ଆସି ଖବର ଦେଲା ରାଜା ପୋଖରୀରେ ଶବଟିଏ ଭାସୁଛି ବୋଲି । ଶବଟି ଏପରି ଫୁଲିଯାଇଛି ଯେ ଆଦୌ ଚିହ୍ନି ହେଉ ନାହିଁ । ମାତ୍ର ଲାଗୁଛି ଦିଗାମ୍ବର ମହାରଣାଙ୍କ ପରି ।

ସଙ୍ଗେ ସଙ୍ଗେ ସଭାସ୍ଥଳୀ ଖାଲି ହୋଇଗଲା । ଭିଡ଼ ଜମିଗଲା ରାଜାପୋଖରୀ ହୁଡ଼ାରେ ।

ଶବଟି ଉପରକୁ ଆଣିବା ବେଳକୁ ଦେଖାଗଲା ଯେ ଶବର ପେଟଟି ଫୁଲି ଯାଇଛି ଠିକ୍ ଗଣେଶଙ୍କ ପେଟ ପରି । ମୁହଁରେ ଥୋଡ଼ପାହାରର ଭ୍ରମ ସୃଷ୍ଟି କରି ଲାଗିଛି ମଦବୋତଲଟି । ଶବର ଗୋଟିଏ ହାତ ଉପରକୁ ଉଠିକରି ରହିଛି ଠିକ୍ ଗଣେଶଙ୍କ ବରଦାମୁଦ୍ରାରେ ।

କିଏ ଜଣେ ଦେଖଣାହାରି ପଛରୁ କହିଲା—କାଲି ବିସର୍ଜନ ସମୟରେ ସେ ତ ବସିଥିଲେ ହଟ୍‌ସିଟ୍‌ରେ । କେହି ବୋଧହୁଏ ଖିଆଲ କରି ନାହାନ୍ତି ତାଙ୍କର ଉପସ୍ଥିତିକୁ ।

# ନିମିତ ନିଃସଙ୍ଗତା

ସକାଳୁଆ ବସ୍ । ସକାଳୁଆ କହିଲେ ବୋଧେ ଠିକ୍ ହେବ ନାହିଁ ବରଂ ପାହାନ୍ତିଆ ବସ୍ କୁହାଯାଇପାରେ । କାରଣ ବସ୍‌ଟି ଛାଡୁଥିଲା ଠିକ୍ ଚାରିଟା ପଇଁଚାଳିଶ୍‌ରେ । ଖରାଦିନେ ସମୟଟା ଜଣାପଡୁ ନ ଥିଲା । ବସ୍ ଧରିବାକୁ ଆସିବା ବେଳକୁ ରାସ୍ତାରେ ସ୍ୱାସ୍ଥ୍ୟ ସଚେତନ ଓ ମେଦବହୁଳ ପୁରୁଷ ଓ ସ୍ତ୍ରୀଲୋକମାନଙ୍କର ପ୍ରାତଃଭ୍ରମଣର ଦୃଶ୍ୟ ପ୍ରାୟତଃ ଆଖିରେ ପଡୁଥିଲା । ମାତ୍ର ଶୀତଦିନ ପୁଣି ଏ ଡିସେମ୍ବର ମାସର ହାଡ଼ଭଙ୍ଗା ଶୀତରେ ବସ୍ ଧରିବାକୁ ଆସିବାବେଳେ ରାସ୍ତା ଥାଏ ନିଶୂନ, ନୀରବ । କୁହୁଡ଼ିର ଗଭୀର ଆସ୍ତରଣ ଭେଦି ଆସୁଥିବା ଷ୍ଟ୍ରୀଟ୍‌ଲାଇଟର ନିଅନ ଆଲୁଅ ବି ଝାପ୍‌ସା ଦିଶେ । ମାତ୍ର ମୁଁ ବଦଳି ହୋଇଯାଇଥିବା ସହରକୁ ଯାଇ କାର୍ଯ୍ୟରେ ଯୋଗଦେବାପାଇଁ ସେହି ବସ୍‌ଟି ହିଁ କେବଳ ପ୍ରକୃଷ୍ଟ ସମୟରେ ଛାଡୁଥିଲା । ତେଣୁ ମୁଁ ପ୍ରତି ସୋମବାରଦିନ ପାହାନ୍ତାରେ ହିଁ ତାକୁ ଆଶ୍ରା କରିଥାଏ ଆସିବାପାଇଁ । ବସ୍ ଟାଇମ୍‌କୁ କାଳେ ମୋ ନିଦ ଭାଙ୍ଗିବ କି ନାହିଁ ସେଥିପାଇଁ ମୋ ଘରର ଅନତିଦୂରରେ ଥିବା ତେଲଗୁ ରିକ୍ସାବାଲାଙ୍କ ବସ୍ତିରେ ରହୁଥିବା ରାମୁଲୁକୁ କହିଦେଇଥାଏ ଯେ ମୋତେ ପାହାନ୍ତିଆ ବସ୍ ଧରାଇବାପାଇଁ । ନିର୍ଦ୍ଦିଷ୍ଟ ସମୟର ଯଥେଷ୍ଟ ପୂର୍ବରୁ ସେ ଆସି ଆମ ଗେଟ୍‌ରେ କଲିଂ ବେଲ ଚିପି ଦିଏ । କଲିଂ ବେଲ୍ ଶବ୍ଦ ଶୁଣି ମୁଁ ଉଠି ଲାଇଟ୍ ଜଳାଏ । ସେ ଜାଣିଯାଏ ମୁଁ ଉଠିଗଲି । ମୁଁ ପ୍ରସ୍ତୁତ ହୋଇ ବାହାରିବା ଯାଏ ସେ ଅପେକ୍ଷା କରିଥାଏ ରିକ୍ସା ଉପରେ ।

ମୁଁ ବସ୍‌ଷ୍ଟାଣ୍ଡରେ ପହଞ୍ଚିବା ବେଳକୁ ବସ୍‌ଟି ପ୍ରାୟ ଷ୍ଟାର୍ଟ୍ ହୋଇ ଘଅଁ ଘଅଁ କରୁଥାଏ । ଏମିତି ଷ୍ଟାର୍ଟ୍‌ରେ ରହି ଘଅଁ ଘଅଁ ହେବାର ପ୍ରାୟ ପନ୍ଦର ମିନିଟ୍ ପରେ ବସ୍‌ଟିଛାଡ଼େ । ମାତ୍ର ମୁଁ ସେଦିନ ପହଞ୍ଚିବା ବେଳକୁ ବସ୍‌ଟି ଷ୍ଟାର୍ଟ୍‌ରେ ନ ଥିଲା । କେବଳ ଯାହା ଭିତର ଲାଇଟ୍ ସବୁ ଜଳୁଥିଲା ଏବଂ କତିପୟ ଯାତ୍ରୀ ନିଜର ପସନ୍ଦ ଅନୁଯାୟୀ ବିକ୍ଷିପ୍ତ ହୋଇ ବସିଥିଲେ ।

ରାମୁଲୁକୁ ବିଦା କରିଦେଇ ମୁଣ୍ଡର ମଂକିକ୍ୟାପଟିକୁ ପୂରା ଟାଣିଦେଇ ଝରକା ପାଖ ଗୋଟେ ସିଟ୍‌ରେ ବସି ଶୀତୁଆ ପାହାନ୍ତାର ଦୃଶ୍ୟ ଉପଭୋଗ କରୁଥାଏ । ଏହି ସମୟରେ ଜଣେ ବ୍ୟକ୍ତି ଉଠିଲେ ବସ୍ ଭିତରକୁ । ତାଙ୍କୁ ବୃଦ୍ଧ କୁହାଯାଇପାରେ । ମାତ୍ର ବୃଦ୍ଧ ବୋଲି କହିଲେ ଆମର ଯେଉଁ ଧାରଣା ସାଧାରଣତଃ ମନକୁ ଆସେ ସେପରି ବୃଦ୍ଧ ସେ ନ ଥିଲେ । ବୟସ ଷାଠିଏରୁ ଉର୍ଦ୍ଧ୍ୱ ଓ ସତୁରିରୁ କମ୍ ହୋଇ

ପାରେ । ସ୍ୱାଭାବିକ ସ୍ୱାସ୍ଥ୍ୟ ସହ ଖୁବ୍ ସକ୍ଷମ ଜଣାପଡୁଥିଲେ ସେ । ବସ୍ ଭିତରକୁ ଉଠୁ ଉଠୁ କଣ୍ଡକ୍ଟର ଉଦ୍ଦେଶ୍ୟରେ ପଚାରିଲେ—କଣ୍ଡକ୍ଟରବାବୁ ! ସିଟ୍ ମିଳିବ ତ ?

କଣ୍ଡକ୍ଟର ଖୁବ୍ ବେପରବାୟ ଢଙ୍ଗରେ କହିଲା— ବସ୍ ଗୋଟାକଯାକ ଫାଙ୍କା, ଆପଣ ପଚାରୁଛନ୍ତି ସିଟ୍ ମିଳିବ କି ନାହିଁ । ଯେଉଁଠି ଖୁସି ସେଠି ବସନ୍ତୁ ।

ସେ ମୋ ସିଟ୍ ପାଖକୁ ଆସି ମୋ ଉଦ୍ଦେଶ୍ୟରେ ପଚାରିଲେ—ଏଠାରେ ଆଉ କେହି ନାହାନ୍ତି ତ ?

ମୁଁ ନାହିଁ କହି ଝରକା ଆଡ଼କୁ ସାମାନ୍ୟ ଘୁଞ୍ଚିଯାଇ ମୋ ଭାବନାରେ ପୁନଃ ମଗ୍ନ ହୋଇଗଲି ।

ଲୋକଟି ଉହୁ-ହୁ-ଉହୁ ହୋଇ ଗୋଟେ ହାତବ୍ୟାଗ୍ ଏବଂ ଗୋଟେ କାଠି ଲଗା ବ୍ୟାଗ୍ ଯେଉଁଥିରେ ସମ୍ଭବତଃ ତାଙ୍କର କପଡ଼ାପତ୍ର ଥିଲା ତାକୁ ସିଟ୍ ତଳେ ସଯତ୍ନରେ ରଖିସାରି ପୁନଃ ଉହୁ-ହୁ-ଉହୁ ହୋଇ ସିଟ୍ ଉପରେ ବସିପଡ଼ିଲେ । ବାହାରେ ପ୍ରବଳ ଥଣ୍ଡା ପଡ଼ିଥିବାରୁ ବୟସ୍କ ଲୋକଜଣକ ଏପରି ଥରୁଛନ୍ତି ବୋଲି ଭାବିଲି । ମାତ୍ର ବସିବାର ବହୁ ସମୟଯାଏଁ ସେ ଘୁମୁରା ପାରା ପରି ଓହୁ-ଓହୋ-ଉହୁ-ହୁ-ହୁ ହୋଇ ଚାଲିଥିଲେ ।

ତାଙ୍କର ଏ ଅବସ୍ଥାକୁ କିଛିକ୍ଷଣ ଲକ୍ଷ୍ୟ କଲାପରେ ମୁଁ ପଚାରିଲି—କ'ଣ ଥଣ୍ଡା ଆପଣଙ୍କୁ ଖୁବ୍ ଜୋର୍ ହୋଇଛି ନା ?

ଲୋକଟି ଆଉ ଟିକେ ଅଧିକ ଜୋର୍‌ରେ ଘୁମୁରି ଘୁମୁରି କହିଲେ—ଥଣ୍ଡା ତ ହେଉଛି । ହେଲେ ଏବେକାର ଏ ଥଣ୍ଡା କଛି ନୁହଁ । ଆମ ପିଲାବେଳର ଥଣ୍ଡା ଏବେ କାହିଁ ? ଜଙ୍ଗଲ ତ ନାହିଁ, ସବୁ ପଦା, ଥଣ୍ଡା ଆସିବ କୁଆଡୁ ? ଥଣ୍ଡା ପାଇଁ ନୁହଁ ମୋ ଦେହଟା ଜମା ଭଲ ନାହିଁ, ଖୁବ୍ ଯନ୍ତ୍ରଣା ହେଉଛି ଭିତରେ, ସେଥିପାଇଁ ମୋର ଏ ଅବସ୍ଥା ।

ଦେହ ଭଲ ନାହିଁ ! କ'ଣ ହୋଇଛି ?

କ'ଣ ହୋଇଛ ତ ମୁଁ ଜାଣିପାରୁନି । ସବୁବେଳେ ମଂଜ ଥରାଇ କେବଳ ଗୋଟେ ଘୁମୁରିଲା ଘୁମୁରିଲା ସ୍ୱର ଆସୁଛି ଭିତରୁ । ମୁଁ ଯେତେ ଚେଷ୍ଟା କଲେ ବି ତାକୁ ବନ୍ଦ କରିପାରୁ ନାହିଁ ।

ଜ୍ୱର ଫୋର ହୋଇଛି କି ?

ଦେଖିଲେ, ମୋ ଦେହରେ କ'ଣ ତାତି ଅଛି ।

ମୁଁ ତାଙ୍କ ଦେହରେ ହାତମାରି ଦେଖିଲି—ତାପମାତ୍ରା ସ୍ୱାଭାବିକ । କହିଲି—ନା, ଆପଣଙ୍କ ଦେହରେ ତ ଟେମ୍ପରେଚର ନାହିଁ ।

ସେଇଆ ତ- ମୁଁ ଜାଣେ ମୋ ଦେହରେ ଜ୍ୱର ନାହିଁ । ତଥାପି କାହିଁକି ଗୋଟେ କମ୍ପ ପୂରାଇବାର ଅନୁଭବ ଲାଗିରହିଛି ଦେହ ଭିତରେ ।

ଏପରି ଅବସ୍ଥାରେ ଏତେ ସକାଳୁ ସକାଳୁ କାହିଁକି ବାହାରିଲେ ? କ'ଣ ଜରୁରୀ କାର୍ଯ୍ୟ ଅଛି ?

ନା—ଜରୁରୀ କାର୍ଯ୍ୟ କିଛି ନାହିଁ, ଯିବାଟା ଜରୁରୀ କେବଳ ।

କୁଆଡ଼େ ଯିବେ ଆପଣ ?

ମୁଜାଗଡ଼ । ମୁଜାଗଡ଼ ଜାଣନ୍ତି ଆପଣ ?

ହଁ—

ମୁଜାଗଡ଼ରେ ଯେଉଁ ବ୍ୟାଙ୍କ ଅଛି, ସେହି ବ୍ୟାଙ୍କ କଡ଼ ରାସ୍ତା ଦେଇ ଟିକେ ବାଟ ଗଲାପରେ ଯେଉଁ କୁମୁଟିସାହି ପଡ଼ିବ ସେଇଠି ମୋ ଘର । କେ.ଜଗନ୍ନାଥ ପାତ୍ର କହିଲେ ସମସ୍ତେ ଚିହ୍ନିବେ । ଚିହ୍ନିବେନି କିପରି, ଚାଳିଶ ବର୍ଷକାଳ ଗୋଟେ ଜାଗାରେ ମାଷ୍ଟର ରହି ରିଟାୟାର୍ଡ କଲି । ଏବେ ସେ ଅଞ୍ଚଳର ଯେତେ ପଢ଼ୁଆ ଓ ବାବୁମାନଙ୍କୁ ଦେଖୁଛ ସବୁ ମୋରି ଛାଟ ଖାଇ ମଣିଷ ହୋଇଛନ୍ତି । ଖାଲି ମାଷ୍ଟର ହୋଇଥିଲେ ଯାଇ ଅଳ୍ପ ଲୋକ ଚିହ୍ନିଥାଆନ୍ତେ—ଆମ ବୁନିଆଦି ଧନ୍ଦା ମହାଜନୀ କାରବାର ମଧ୍ୟ କରୁଥିଲି । ରୋଗ ବଇରାଗ, ପୁଅଝିଅ ବାହା, ମଲାକାମ, ପୁଅ ପାଠପଢ଼ା, ଭଲ ମନ୍ଦରେ ସବୁବେଳେ ଲୋକଙ୍କର ଧାଉଡ଼ି ଥିଲା ମୋ ଘରକୁ । କେବଳ ଆମ ଗାଆଁ ନୁହଁ, ଆଖ ପାଖର କୋଶେ-ଡାକର ଲୋକେ ବି ଜାଣନ୍ତି ମୋତେ । ଲୋକେ ବି ଆଦର କରନ୍ତି । କରଜ ଦେଇ ଚଢ଼ା ସୁଧ ନେବାଟା ବଡ଼ କଥା ନୁହଁ, ବଡ଼ କଥା ହେଲା ଲୋକଙ୍କ ଦାୟ ଦରକାରବେଳେ ଘରୁ ପଇସା କାଢ଼ିପାରିବା । ତା' ପରେ ଆମର ଗୋଟେ କୁମୁଟି ସମାଜ ଅଛି । ସେ ସମାଜର ପାଣ୍ଠି ଢେର । ମୁଁ ବହୁବର୍ଷ ଯାଏଁ ତା'ର ଟ୍ରେଜେରର ଥିଲି । ତେଣୁ ଲୋକେ ତ ଚିହ୍ନିବେ ନା ।

କଥା କହିଲାବେଳେ ଖୁବ୍ ସ୍ୱାଭାବିକ ଓ ସାମାନ୍ୟତମ ଅସୁସ୍ଥତାର ସୂଚନା ମିଳୁ ନ ଥିବା ଲୋକଟିର କଥା ବନ୍ଦ ହୋଇଯିବାକ୍ଷଣି ଆପେ ଆପେ ବାହାରି ଆସୁଥିବା—ଓହୋ-ହୋ-ହୋ-ଉହୁ, ମରିଗଲି, ମରିଗଲି—ସେ ସ୍ୱରର ଆର୍ତ୍ତି ଏପରି ଥିବ ଯେ ଲାଗୁଥିବ ଯେମିତି ଲୋକଟି ଅସହ୍ୟ ଯନ୍ତ୍ରଣାରେ ଅଧୀର ହୋଇପଡୁଛି ।

ମୁଁ ତାଙ୍କର ଏପରି ଅବସ୍ଥାକୁ ଦେଖି ପଚାରିଲି—ଏମିତି କେତେଦିନ ହେଲାଣି ହେଉଛି ?

ଠିକ୍ କରି ତ କହିହେବ ନାହିଁ— ହେଲେ ମୋର ଯାହା ମନେପଡୁଛି ବୁଢ଼ୀଟା ମଲା ପରେ ପରେ ମୋତେ ଏ ବେମାରି ହୋଇଛି ।

ସେ କେବେଠାରୁ ମଲେଣି ?

ପାଖାପାଖି ତିନିବର୍ଷ ହେବ ।

ଆରେ ତିନିବର୍ଷ ହେଲାଣି ଏପରି ହେଉଛି, ଆଉ ଆପଣ ଡାକ୍ତରଙ୍କୁ ଦେଖାଉ ନାହାନ୍ତି ?

ଡାକ୍ତରଙ୍କୁ ଦେଖାଇବା କଥା କହୁଛନ୍ତି—ସେଗୁଡ଼ାକ ଗୋଟେ ଗୋଟେ ଖଣ୍ଟ ।

କବିରାଜି, ହୋମିଓପାଥିଠାରୁ ଏଲୋପାଥି ଯାଏଁ ସବୁ ଦେଖାଇ ସାରିଲିଣି । ରକ୍ତ, ମଳ, ମୂତ୍ର ସବୁ ପରୀକ୍ଷା କରାଉଛନ୍ତି । ମେଞ୍ଚେ ମେଞ୍ଚେ ଔଷଧ ଲେଖୁଛନ୍ତି, ହେଲେ ରୋଗ ଭଲ ହେବାର ନାଆଁ ଧରୁ ନାହିଁ । ଖାଲି ଏସା କର, ତେସା କର କହି ଥରକୁ ଥର ଓଷଧ ବଦଳାଉଛନ୍ତି । ମୋର ବି ଗୋଟେ ଛାତ୍ର ଏଠି ଡାକ୍ତର ଅଛି । ତା'ର ଖୁବ୍ ନାଆଁଡାକ ଏବେ । ତାକୁ ବି ଦେଖାଇଲି । ସେ ପୁରୁଣା ରିପୋର୍ଟ ନ ଦେଖି ଆଉଥରେ ସବୁ ପରୀକ୍ଷା କରାଇଲା । ଔଷଧ ଲେଖିଲା । ପଇସା ବି ଭିଡ଼ିକରି ନେଲା, ଟିକେ ଛାଡ଼ିଲାନି । ଭାବିଥିଲି ପାଠ ପଢ଼ାଇଛି । ତାକୁ ଡାକ୍ତରୀ ପଢ଼ାଇବାପାଇଁ ତା' ବାପାକୁ ସୁଧିଆରେ ପଇସା ଦେଇଛି, ସେ ସେହି ଉପକାର ଓ ଗୁରୁ ହିସାବରେ ପଇସା ନେବ ନାହିଁ । ସେ ବି ଆହୁରି ଚାଲାଖ, ଆମ ଜାତିଆ ପିଲା ତ, ନିଜେ କ'ଣ ପଇସା ମାଗିଲା, ତା' ଲୋକେ ତ ଏଇଟାକୁ ଏତେ ସେଇଟାକୁ ଏତେ କହି ପଇସା ହାଙ୍କି ନେଲେ । ମୁଁ ମନେ ମନେ ଭାବିଲି ଭଲ ଗୁରୁଦକ୍ଷିଣା ଦେଲାରେ ମୋତେ ।

ରୋଗ କ'ଣ ବୋଲି କହିଲେ ?

କହିଲା ରୋଗ କିଛି ନାହିଁ—ଏଇଟା ନିଃସଙ୍ଗତାଜନିତ ବ୍ୟାଧି । ଫୁ— ଏଗୁଡ଼ାକ କି ପାଠ ପଢ଼ିଛନ୍ତି କେଜାଣି ? ଯନ୍ତ୍ରଣା କିପରି ହେଉଛି ଆପଣ ତ ଦେଖିଲେ । ରୋଗ ନ ଥାଇ ମୋତେ କ'ଣ ଭଲ ଲାଗୁଛି ପେଖନା କରି ପଇସା ଖର୍ଚ୍ଚ କରିବାକୁ। ନିଃସଙ୍ଗତା - ନିଃସଙ୍ଗତା କ'ଣପାଇଁ ? କ'ଣ ବୁଢ଼ୀ ମରିଗଲା ବୋଲି ? ବୁଢ଼ୀ ମରିଗଲା ତ ଗଲା-ହେଲେ ପୁଅ-ବୋହୂ ତ ଅଛନ୍ତି ।

—ପୁଅ କ'ଣ କରୁଛନ୍ତି ?
—କେଉଁ ପୁଅ ?
—ଆପଣଙ୍କର କେତୋଟି ପୁଅ ?
—ଦୁଇଟି ।
—ହଉ ସେ ଦୁଇଜଣଯାକ କ'ଣ କରୁଛନ୍ତି ?

ବଡ଼ଟା ସେକ୍ରେଟାରୀଏଟ୍‌ରେ କିରାଣି ଓ ସାନଟା ଏଇ ବରହମ୍‌ପୁରରେ ଓଭରସିଅର ଅଛି ପି.ଡବ୍ଲ୍ୟୁ.ଡି. ରେ ।

ସାନପୁଅ ପାଖକୁ ବୋଧେ ଯାଇଥିଲେ ?

ହଁ— ସାନପୁଅ ପାଖକୁ ଯାଇଥିଲି ଯେ ହେଲେ କ'ଣ କରିବି...

କ'ଣ ହେଲା କି ?

ନା-ହେବ ଆଉ କ'ଣ, ପୁଅଟା ଭଲ ହେଲେ ବୋହୂଟା ଗୋଟେ ଗୋତର ଛିଣ୍ଡାଇ । ପୁଅଟା ପାଖରେ ତ ସମୟ ନାହିଁ ବାପ ସଙ୍ଗେ ପଦେ ଭଲମନ୍ଦ କଥା ହେବାପାଇଁ । ତା'ର ତ ଖାଲି କାମ ଆଉ କାମ । ନାତି, ନାତୁଣୀ ଦିଇଟା ବି ସେମିତି । ସେମାନେ କି ପାଠ ପଢୁଛନ୍ତି କେଜାଣି ସ୍କୁଲ ଓ ଟିଉସନ୍ ଭିତରେ ତାଙ୍କର ସମୟ ଯାଉଛି । ଆଉ ବୋହୂଟାପାଇଁ - ମୋ ଉପସ୍ଥିତି ଅନୁପସ୍ଥିତି ଏକା କଥା । ସେଠି ମୋ ଉପସ୍ଥିତି ଚିଡ଼ିଆଖାନାର ଜୀବଟିଏଠାରୁ କୌଣସି ଗୁଣରେ ଅଧିକ ନୁହଁ । ସମୟ ଅନୁଯାୟୀ ମୁଠେ ଖାଇବାକୁ ଦେଇଦେବା ଓ ସମୟ ହୋଇଗଲା ଶୋଇପଡ଼ର ନିର୍ଦ୍ଦେଶ ଭିତରେ ସଂପର୍କ ସୀମିତ । ଏଥିରେ କ'ଣ ମଣିଷ ବଞ୍ଚିପାରେ ? ଆରେ, ମୁଁ କ'ଣ ମୁଠେ ଖାଇବାକୁ ଆସି ସେମାନଙ୍କ ପାଖରେ ପଡ଼ିଛି । ଜୀବନରେ ଢେର ଅର୍ଜିଛି । ଘରଦ୍ୱାର, କୋଠାବାଡ଼ି ସବୁ କରିଛି । ଏବେବି ବାଇଶଶହ ଟଙ୍କା ପେନ୍‌ସନ ପାଉଛି । ମୋ ନିଜ ପେଟପାଇଁ ଯଥେଷ୍ଟ । ମୁଁ ତାଙ୍କ ପାଖରେ ଯେଉଁ ରହୁଛି ତାହା କେବଳ ସଂପର୍କପାଇଁ ନା କ'ଣ ମୋ ପେଟ ଅପୋଷା ରହିଯାଉଛି ବୋଲି ? ହେଲେ ଦିନମାନ ପାଟି ଖୋଲି କାହା ସଂଗେ ପଦେ କଥା ହେବାର ସୁଯୋଗ ନ ଥିବା ବେଳେ କେଉଁ ସଂପର୍କକୁ ଧରି ମୁଁ ତାଙ୍କ ପାଖରେ ପଡ଼ି ରହିଥାଆନ୍ତି ? ଯେଇଥିପାଇଁ ତ ସେମାନଙ୍କୁ ନ ଜଣାଇ ଏଇ ଶୀତୁଆ ପାହାନ୍ତାରୁ ମୁଁ ଉଠି ଚାଲିଆସିଛି ଗାଆଁକୁ ଯିବାକୁ । ଖୋଜନ୍ତୁ-ଖୋଜନ୍ତୁ ସେମାନେ । ସେମାନେ ମୋତେ ଖୋଜିଲେ ମୁଁ ଅନ୍ତତଃ ଖୁସି ହେବି ଯେ ମୋ ଜୀବନର କିଛିଟା ମୂଲ୍ୟବୋଧ ବୋଧେ ରହୁଛି ।

ଏ ପୁଅ ବୋହୂଙ୍କ ପାଖରେ ସିନା ସମୟ ନାହିଁ ଆପଣଙ୍କ ସହ କଥାବାର୍ତ୍ତା କରିବାକୁ । ବଡ଼ପୁଅ ପାଖକୁ ଚାଲିଗଲେନି ?

ସବୁ ଗୋଟିଏ ଲାଉର ମଞ୍ଜି । ସେ ଖାଲି ତା'ର ଅଳ୍ପ ଦରମା, ଭୁବନେଶ୍ୱରର ଚଳଣି କେତେ ମହଙ୍ଗା କହି ମୁଁ ରଖିଥିବା ପେନ୍‌ସନ୍ ଟଙ୍କା ହାତେଇବାକୁ ଚେଷ୍ଟା କରିବ । ଆରେ ତମମାନଙ୍କପାଇଁ ଏତେ କଲି ଏବଂ ତମପାଇଁ ତ ସଂପତ୍ତିବାଡ଼ି କରିଦେଲି, ମୋ ପେନ୍‌ସନ୍ ଟଙ୍କାକୁ ତମେ ଯଦି ଆଖି ପକାଇବ ତେବେ ମୋର ଆଉ ଭବିଷ୍ୟତ୍ କ'ଣ ରହିଲା ?

ତାଙ୍କ ମୁହଁରୁ ଭବିଷ୍ୟତ୍ କଥା ଶୁଣି ମୁଁ ବିସ୍ମିତ ହୋଇ ତାଙ୍କୁ ପଚାରିଲି— ଏବେ ଆଉ କେଉଁ ଭବିଷ୍ୟତ୍‌କୁ ଆପଣ ଅପେକ୍ଷା କରୁଛନ୍ତି ?

ମୁଁ ରିଟାୟାର୍ଡ ହୋଇଗଲି ବୋଲି କ'ଣ ମୋର ଭବିଷ୍ୟତ୍ ସରିଗଲା ବୋଲି ଆପଣ ଭାବୁଛନ୍ତି । ଜୀବଥିବା ଯାଏଁ ତ ଗୋଟେ ଭବିଷ୍ୟତ୍‌ର ଆଶା ଓ ସମ୍ଭାବନା ରହିଛି । ଏପରି କି ମଲାପରେ ମଧ୍ୟ ଭବିଷ୍ୟତ୍ ରହିଛି ।

ମଲା ପରେ କେମିତି ?

ପାଖରେ ଟଙ୍କା ଓ ସଂପତ୍ତି ନ ଥିଲେ ଏ ପୁଏ ଆସିବେ ମଲା ମଡ଼ା ଉଠାଇବାକୁ? ସେମାନଙ୍କ ମତିଗତିକୁ ଦେଖି ତ ମୁଁ ସୂଚେଇ ଦେଇଛି ମୋ ମଲା ବେଳକୁ ଯିଏ ପାଖରେ ଥିବ ତାକୁ ହିଁ ସୂଚନା ଦେବି ଗୁପ୍ତଧନର । ଏବେ ସିନା ସେମାନଙ୍କର ସମୟ ନାହିଁ ମୋପାଇଁ, ହେଲେ ମୋ ମଲାବେଳକୁ ଠିକ୍ ସମୟ କାଢ଼ି ଆସି ହାଜର ହେବେ । ଧନପାଇଁ କାହାର ଲୋଭ ନାହିଁ କହିଲେ ?

ତାଙ୍କର କଥା ଶୁଣି ମୁଁ ବିସ୍ମୟ ହେବା ସହ ଚୁପ୍ ହୋଇଗଲି । ତାଙ୍କର କଥା ବନ୍ଦ ହୋଇଯିବାର କିଛିକ୍ଷଣ ପରେ ପୁନଃ ଆରମ୍ଭ ହୋଇଗଲା ଓହୋ-ହୁ-ହୁ-ହୁ, ଉହୁ-ମରିଗଲିର ସ୍ୱର । ଏତେ ସମୟ ଧରି ପାଖାପାଖି ବସି ଯାତ୍ରା କରିସାରିବା ପରେ ତାଙ୍କ ସହ ମୋର ଅନ୍ତରଂଗତା ବଢ଼ିଯାଇଥିବା ଭାବି ସେ ମୋତେ କହିଲେ- ଟିକେ ମୋ ଉପରେ ହାତ ପକାଇ ମୋତେ ଭିଡ଼ି ଧରିବେ କି ।

ମୁଁ ତାଙ୍କର ଏଇ ଅସ୍ୱାଭାବିକ ଅନୁରୋଧଟିକୁ ଏଡ଼ାଇ ନ ପାରି ତାଙ୍କ ପିଠିପଟେ ମୋର ହାତକୁ ବେଢ଼ାଇ ଆଣିଲି, ଭିଡ଼ି ଧରିଲି ।

ମୁଁ ବେଶ ଜାଣିପାରୁଥାଏ ଯେ ସେ ଖୁବ୍ ଆଶ୍ୱସ୍ତ ଅନୁଭବ କରୁଛନ୍ତି । ମୋ ଭିଡ଼ି ଧରିବା ଭିତରେ ସେ ମୋତେ ପଚାରିଲେ ଆପଣ କ'ଣ କରନ୍ତି ?

ମୁଁ ଅଧ୍ୟାପକ ଅଛି ।

ଏଁ ଅଧ୍ୟାପକ । ଯୋଗ ଦେଖ ତ, ଆଉଥରେ ମୁଁ ଠିକ୍ ଏମିତି ବସ୍‌ରେ ଯାଉଥିଲି, ମୋ ଦେହଟା ବି ଏମିତି ହେଉଥିଲା, ମୋ ପାଖରେ ଯିଏ ବସିଥିଲେ ସିଏବି ଜଣେ ଅଧାପକ ଥିଲେ । ମୋର ଏମିତି ଅବସ୍ଥା ଦେଖି ସେ କେବଳ ମୋତେ ଭିଡ଼ି ଧରି ନ ଥିଲେ, ଆଉଁଶା ଘଷା ବି କରିଥିଲେ । ତାଙ୍କ ହାତରେ କି ଯାଦୁ ଥିଲା କେଜାଣି ତା'ପରେ ଅନେକ ଦିନଯାଏ ସେ ବେମାରି ମୋର ହୋଇ ନ ଥିଲା । ଯୋଗ କେମିତି ଦେଖ ତ, ଆଜି ଆପଣ ବସିଛନ୍ତି ପାଖରେ, ଆଉ ଆପଣ ବି ଜଣେ ଅଧ୍ୟାପକ ।

ମୁଁ ଜାଣୁଥିଲି ତାଙ୍କର ପ୍ରଚ୍ଛନ୍ନ ଅଭିପ୍ରାୟ, ଅନୁଗୃହୀତ ବି କଲି ।

ମୁଜାଗଡ଼ରେ ଓହ୍ଲାଇଲା ବେଳକୁ ସେ ଜଣାପଡୁଥିଲେ ସଂପୂର୍ଣ୍ଣ ସୁସ୍ଥ । ଓହ୍ଲାଉ ଓହ୍ଲାଉ ମୋତେ ଦେଖାଇଦେଲେ ତାଙ୍କ ଘରକୁ ପଡ଼ିଥିବା ରାସ୍ତାକୁ ଏବଂ କହିଲେ- ଏବେ ଖୋଜନ୍ତୁ, ଖୋଜନ୍ତୁ ସଭିଏଁ, ଖୋଜି ହେଉଥାଆନ୍ତୁ ସେମାନେ । ମୁଁ ଏବେ ଏକା ଏକା ବଞ୍ଚିବାର କଳା ଶିଖି ନେବି । ପୁଣି ଯଦି କେବେ ଭେଟ ହୁଏ ଶୁଣିବେ ଏ ରୋଗ ଆଉ ନ ଥିବ ।

# ଆବେଶ ମାତୃତ୍ୱ

ବୁବୁନ୍ ଏବେ କରୁଥିବ କ'ଣ ? କିଏ ଖୁଆଇ ଦେଉଥିବ ତାକୁ ଆଜି ରାତିରେ ? କିଏ ତାକୁ ଶୁଆଇ ଦେଉଥିବ ପରୀ କାହାଣୀ ଓ ଲୁଲାବି ଶୁଣାଇ ?

ଏଡ଼ିକି ବକଟେ ଛୁଆ, ସେ କେମିତି ବା ଜାଣିପାରିଲା ଯେ ମୋ ବାହାଘର ହେଇଯାଉଛି ଓ ମୁଁ ସବୁଦିନ ପାଇଁ ଦୂରେଇଯାଉଛି ତା'ଠାରୁ? ଓଃ- କି ଛାତିଫଟା କାନ୍ଦଣା ତା'ର ! କି ଚିର୍‌ଚିରା ରଡ଼ି ଛାଡ଼ି କାନ୍ଦୁଥିଲା ସେ ମୋତେ ଯେତେବେଳେ ଜବରଦସ୍ତ ଟେକିଆଣି ଭର୍ତ୍ତିକରି ଦେଉଥିଲେ କାର୍ ଭିତରେ । ସତେ ଯେମିତି ମୁଁ ଶାଶୂଘରକୁ ଯାଉନି, ଯାଉଛି ଶ୍ମଶାନପୁରୀକୁ, ତା'ର କୋହକୁ ଦେଖିଲେ ଲାଗୁଥିଲା ଯେମିତି ତା' ଆଖି ଆଗରେ ଜଳିଯାଉଛି ମୋର ଚିତାଭସ୍ମ ଓ ଚିରଦିନ ପାଇଁ ମୁଁ ଦୂରେଇଯାଉଛି ତା'ଠାରୁ ।

କିଏ ତାକୁ ବୁଝାଇଥିବ ଶୁଝାଇଥିବ ଘଟଣା କ'ଣ ବୋଲି ? ଯେତେ ଯିଏ ବୁଝାଇଲେ ବି ସେ କଣ ସତରେ ବୁଝିଯାଇଥିବ ? ଝିଅ ବିଦା ସମୟରେ ଏତେ ଲୋକଙ୍କର ସମ୍ମିଳିତ କାନ୍ଦଣା ଭିତରେ ବାରି ହୋଇପଡୁଥିଲା ତା'ର କାନ୍ଦଣା । ତା'ର ଆକୁଳ ଆର୍ତ୍ତଚିତ୍କାର ମାମା-ମାମା, ମୋତେ ନେ— ମୋତେ ନେ, ମୁଁ ମାମା ସାଂଗରେ ଯିବି, ମୁଁ ମାମା ସାଙ୍ଗରେ ଯିବି, ଫଟାଇ ଦେଉଥିଲା ଛାତି ।

ବୁବୁନ୍‌ର ବିକଳ କାନ୍ଦଣା ଓ ଆକୁଳ ଆହ୍ୱାନକୁ ଏଡ଼ାଇ ପାଦ ମୋର ଜମା ଆଗକୁ ବଢୁ ନ ଥିଲା । ବାରମ୍ବାର ଫେରିଯାଉଥିଲି ତା ପାଖକୁ, ଦବାଇ ଧରୁଥିଲି ଛାତିରେ । ନାନୀ ଏ ଦୃଶ୍ୟ ଦେଖି କହିଲା— ବୁବୁନ୍ ତା ପାଖରେ ଥିବାଯାଏ ସେ ବିଦା ହୋଇପାରିବନି । ମୁଁ ବୁବୁନ୍‌କୁ ନେଇଯାଉଛି ସେପଟକୁ, ତାକୁ ଏପଟେ ବିଦା କରିବାର ବ୍ୟବସ୍ଥା କର ।

ବୁବୁନ୍ ଓ ମୋ ଭିତରେ ପଡ଼ିଯାଇଥିବା ଜାବକୁ ଫିଟାଇ ନାନୀ ଭିଡ଼ିନେଲା ବୁବୁନ୍‌କୁ । ଲାଠି ପରି ବାଙ୍କି ଯାଇ ବୁବୁନ୍ ଚିତ୍କାର କରୁଥିଲା ମୋତେ ନେଇଯା ମା, ମୋତେ ସାଙ୍ଗରେ ନେଏ, ଛାଡ଼ି ଦେଏନା । ତା'ର କାନ୍ଦଣାର ସ୍ୱର ଓ ଡାକ ବର୍ଚ୍ଛା ପରି ବାଜୁଥିଲା ଛାତିରେ, ଫାଟି ଯାଉଥିଲା ଛାତି । ସେ ଯେତେ ଯେତେ ଦୂରକୁ ଦୂରକୁ ଚାଲିଯାଉଥିଲା, ତା'ର କାନ୍ଦଣା ସ୍ୱର ଓ ମାମା-ମାମା ଡାକ ସେତେ ସେତେ ଅଧିକ ଓ ଗଭୀର ଭାବରେ ମୋ କାନରେ ବାଜୁଥିଲା । ଏପରିକି କାର୍ ଭିତରେ ଆସି ବସିସାରିବା ପରେ ମଧ୍ୟ କାର୍ ଶବ୍ଦଟା ମୋତେ ଶୁଭୁଥିଲା ମାମା-ମାମା ଡାକ ପରି ।

କେତେ ମାସର ହେଇଥିବ ବୁବୁନ୍ - ନାନୀ ଯେତେବେଳେ ଛାଡ଼ିଦେଇ ଯାଇଥିଲା ମୋ ପାଖରେ ? ଏଇ ଛଅ ସାତ ମାସର ତ ? ଅମୂଲ ବେବି ପରି ଦିଶୁଥିଲା ଡଉଲ ଡାଉଲ ଓ ହସକୁରା । ହାତ ବଢ଼ାଇଦେଲେ ଡେଇଁପଡୁଥିଲା କାଖକୁ । ଭୋକବେଳେ ପାଟିରେ ଫିଡିଂ ବୋତଲ ଧରାଇଦେଲେ ଦିନମାନ କାନ୍ଦର ନାଆଁ ଧରୁ ନ ଥିଲା । ନାନୀର ଆମ ଘରେ ରହଣି ସମୟରେ ସେ ମୋତେ ଏତେ ମାତ୍ରାରେ ଆଦରି ଯାଉଥିଲା ଯେ ମୋ କୋଳରୁ ତାକୁ କିଏ ନେଇଯାଉଥିଲେ ଚିହିରା ଛାଡ଼ି କାନ୍ଦୁଥିଲା ସେ । ମୁଁ ତାକୁ ଧୋ-ଧୋ ବାୟା ନ କଲା ଯାଏ ଶୋଉ ନ ଥିଲା ।

ନାନୀ ଆମ ଘରେ ଥିବା ବେଳେ ମଝିରେ ମଝିରେ ଭିଣୋଇ ଆସନ୍ତି ଛୁଟି ନେଇ । ସେ ଆସିଲେ ମୋ ବିଛଣାରୁ ନାନୀର ବିଛଣା ଅଲଗା ହୋଇଯାଉଥିଲା । ବୁବୁନ୍ ବିଛଣାରେ କାନ୍ଦୁଥିଲା । ନାନୀ ଓ ଭିଣୋଇଙ୍କର ସମସ୍ତ ପ୍ରବୋଧନାସତ୍ତ୍ୱେ ସେ ତୁନି ହେବାର ନାଆଁ ଧରୁ ନ ଥିଲା । ନାନୀ ବାଧ ହୋଇ ତାକୁ ଆଣି ମୋ ପାଖରେ ଛାଡ଼ି ଦେଇ କହୁଥିଲା— ନେ, ରଖ ୟାକୁ । ବୁଝାଇ ବୁଝାଇ ଥକି ସାରିଲିଣି, ତା'ର ଗୋଟିଏ ରାହା, ମାମା- ମାମା । ତୁ ବୋଧେ ତା'ର ଅସଲି ମା' ।

ମୁଁ ହାତ ବଢ଼ାଇବାକ୍ଷଣି ନିଆଁରେ ପାଣି ପକାଇବା ପରି ଥପ୍ କରି ବନ୍ଦ ହୋଇଯାଉଥିଲା ତା'ର କାନ୍ଦ ।

ନାନୀ ତା'ର ଏପରି ଭାବ ଦେଖି ମୋତେ ଥଟ୍ଟାରେ କହୁଥିଲା— ଆହା ମା କୋ... ପାଇଗଲା ତ ।

ମୁଁ ନାନୀକୁ କହିଲି — ମାଆ ପରି ତୁ ମୋତେ ଏତେ କରିଥିଲୁ । ବାଳୁତ ବୟସରୁ ମାଆ ମାରିଗଲା ଅଥଚ ମା'ର ବିଚ୍ଛେଦ ଦୁଃଖ କ'ଣ ମୁଁ ଜାଣି ନ ଥିଲି । ତୋ ପୁଅ ସେହି ଋଣ ଆଦାୟ କରୁଛି, ତେଣୁ ମୋତେ ଟିକେ ସୁଯୋଗ ଦେ ତୋ ଋଣ ଶୁଝିବାକୁ ।

କଣ କହିଲୁ - କଣ କହିଲୁ ? ଋଣ ଶୁଝିବୁ, କି ଋଣ, କାହାର ଋଣ ଶୁଝିବୁ ? ମୁଁ ତୋତେ କେଉଁ ଋଣ ଦେଇଥିଲି ଯେ ତୁ ଶୁଝିବୁ ? ଧୀରେ ଧୀରେ ନାନୀର କଣ୍ଠରେ ଭରିଆସିବ କୋହ । ବଦଳିଯିବ ତା'ର ସ୍ୱର । କୋହଭରା ସ୍ୱରରେ କହିବ - ତୋର କ'ଣ ହେତୁ ଆସିଥିଲା ଯେ ତୁ ମନେ ରଖିବୁ ବୋଉର ସେ ଶେଷ ସମୟର କଥାକୁ । ବୋଉ ମଲାବେଳକୁ ତୁ ତା ଖଟ ମୁଣ୍ଡରେ ବସି ସଢ଼େଇରେ ଭାତ, ଡାଲି, ତରକାରି, ରାନ୍ଧୁଥିଲୁ । ଗୋଟିଏ କଣେଇ ବସାଇଥିଲୁ ଅସନ ଉପରେ । ବୋଉ ଯେମିତି ବାପାଙ୍କୁ ବଳାଇ ବଳାଇ ଖାଇବାକୁ ଦିଏ ଓ ପଚାରେ ଏଇଟା କେମିତି ହୋଇଛି, ସେଇଟା କେମିତି ହୋଇଛି, ଆଉ ମୁଠେ ଭାତ

ଦେଉଛି, ଠିକ୍ ସେମିତି ତୋର କଥାବାର୍ତ୍ତା ଚାଲିଥିଲା କଣେଇମାନଙ୍କ ସହ, ମଝିରେ ମଝିରେ କହୁଥିଲୁ— ଆରେ, ପିଲା ଦିଇଟା କୁଆଡ଼େ ଗଲେ, ଖାଇ ଦେଇଥିଲେ ଏକାଥରକେ ଅଇଁଠାବାସନ ମାଜି ଆଣି ଥାଆନ୍ତି ।

ରୋଗଶଯ୍ୟାରେ ଶୋଇ ମଧ ବୋଉ ତୋର ସେହି ଧୂଳିଘର ଖେଳ ଓ ବୋଉପଣକୁ ଦେଖୁଥିଲା । ତୋ ଖେଳ ଦେଖୁ ଦେଖୁ ମୋ ଆଡ଼କୁ ଥରେ କରୁଣ ଦୃଷ୍ଟିରେ ଚାହିଁଲା । ତା'ପରେ ମୋ ମୁଣ୍ଡ ଉପରେ ହାତ ଥାପି କହିଲା - ମୋ ମାଆଟା ପରା, ତୋର ବୁଝିବାର ବୟସ ହୋଇଗଲାଣି । ଏଇ ତୋର ଭଉଣୀ ନୁହେଁ, ଝିଅ ବୋଲି ଭାବିବୁ । ତା'ର ଏ ଖେଳଘରକୁ ତୁ ଭାଂଗି ଦେବୁନି ।

ବାପା ଛିଡ଼ା ହୋଇଥିଲେ ଦୁଆର ମୁହଁରେ । ହାତଠାରି ତାଙ୍କୁ ଡାକିଲା ।

ଭିତରେ ଭିତରେ ଖୁବ୍ ଭାଙ୍ଗି ପଡ଼ିଥିବା ବାପା ବୋଉର ଇସାରାରେ ଚୁପ୍ ଚାପ୍ ଆସି ଛିଡ଼ା ହେଲେ ତା' ବିଛଣା ପାଖରେ, ବାପାଙ୍କ ହାତକୁ ଧରିଲା ବୋଉ । ବହୁ କଷ୍ଟରେ ତା' ମୁଣ୍ଡ ଉପରେ ବାପାଙ୍କ ହାତକୁ ରଖି କହିଲା - ଏମାନଙ୍କ ଦାୟିତ୍ୱ ତୁମକୁ ଲାଗିଲା ।

ବାସ୍ - ସେତିକି ଯଥେଷ୍ଟ ଥିଲା ବାପାଙ୍କର ଲୁହର ବନ୍ଧ ଭାଙ୍ଗିବାକୁ । ସେ ଲୋଟିପଡ଼ିଲେ କୋହରେ ବୋଉ ଉପରେ, ସେ ପ୍ରକୃତିସ୍ଥ ହେବା ବେଳକୁ ବୋଉ ଗୋଟେ ପରମ ପରିତୃପ୍ତିର ଭାବ ନେଇ ଶୋଇଯାଇଥିଲା ମହାନିଦ୍ରାରେ ।

ବୋଉର ଶେଷ ଅନୁରୋଧକୁ ବାପା ରକ୍ଷା କଲେ । ଆମ ଦୁଇଜଣଙ୍କୁ ସେ ଉଭୟ ମାଆ ଓ ବାପାର ସ୍ନେହଶ୍ରଦ୍ଧା ଦେଇ ବଢ଼ାଇଲେ । ବନ୍ଧୁବାନ୍ଧବ, ଶୁଭାକାଙ୍‌କ୍ଷୀ ଅନେକ ବୁଝାଶୁଝା କରିଛନ୍ତି ଆଉ ଥରେ ବିବାହ କରିବାକୁ । ସେ ତାଙ୍କୁ ଦୂର-ଦୂର କହି ଗୋଡ଼ାଇଛନ୍ତି, ବଂଶରକ୍ଷାପାଇଁ ପୁଅଟିଏ ଦରକାର ବୋଲି ସମସ୍ତେ ବାଧ କରି କହିଛନ୍ତି, ମାତ୍ର ବାପା କହୁଥିଲେ ଏ ଦୁହେଁ ମୋର ଝିଅ ନୁହନ୍ତି ପୁଅ ମଧ । ବୋଉର ଶେଷ ଅନୁରୋଧ ରକ୍ଷା କରି ବାପା ଏତେ ବଡ଼ ତ୍ୟାଗଟିଏ କଲେ, ଆଉ ମୁଁ ବୋଉର ଉପଦେଶ ପାଳନ କଲି ବୋଲି ତୁ ମୋ ପାଖରେ ଋଣୀ ହୋଇଗଲୁ? ଓଃ.. ତୁ ବଡ଼ ହୋଇଗଲୁଣି ତ, ତେଣୁ କଥା ବାଗରେ କହୁଛୁ ।

ନାନୀ ଆମ ଘରେ ରହିଥିବା ବେଳେ ଭିଣେଇଙ୍କର ପୋଷ୍ଟିଂ ହେଲା ଲଦାଖ୍‌ରେ, ପ୍ରତିରକ୍ଷା ବିଭାଗର ଚାକିରି - ନା ବଦଳି ବାତିଲ୍ ହେବ ନା ନ ଯାଇ ରହିବେ । ପୋଷ୍ଟିଂ ଅର୍ଡର ପାଇ ଶୁଖିଲା ମୁହଁରେ ଭିଣୋଇ ପହଞ୍ଚିଲେ ଆମ ଘରେ, ସମସ୍ତେ ତାଙ୍କର ଲଦାଖ୍ ପୋଷ୍ଟିଂ କଥା ଶୁଣି ମନ ଦୁଃଖ କଲେ । ତାଙ୍କପାଇଁ ସମସ୍ତଙ୍କର ଚିନ୍ତା ଦେଖି ଭିଣୋଇ କହିଲେ—ସେଠାରେ ଫ୍ୟାମିଲି ହୋଲ୍‌ଡରମାନଙ୍କ

ରହିବା ପାଇଁ ବେସ୍ କ୍ୟାମ୍ପରେ ରହିବା ପାଇଁ କ୍ୱାର୍ଟର ଦିଆଯିବ । ଫ୍ୟାମିଲି ନ ଥିଲେ ପଠାଇଦେବେ ହାୟ ଅଲଟିଚ୍ୟୁଡ୍‌କୁ । ହେଲେ ଏବେ ବୁବୁନ୍‌କୁ ନେଇ ବେସ୍ କ୍ୟାମ୍ପର କ୍ୱାର୍ଟରରେ ରହିବା ମଧ ଏକ ସମସ୍ୟା । ଏତେ ଛୋଟ ପିଲା ସେ କଣ ଆଡ୍‌ଜଷ୍ଟ କରିପାରିବ ସେ କ୍ଲାଇମେଟ୍‌ରେ ?'

ଭିଣୋଇଙ୍କ ସମସ୍ୟା ନେଇ ଆମ ଘରେ ଏକ ଚିନ୍ତାମଗ୍ନ ବାତାବରଣ ଥିବା ବେଳେ ବାପା କହିଲେ - ବୁବୁନ୍ ଏଇଠି ରହିଯାଉ ।

ଏତେ ଛୋଟ ଛୁଆଟା ମାଆକୁ ଛାଡ଼ି ଏଇଠି ରହିବ କେମିତି ପଚାରିଲେ ଭିଣେଇ ।

ଆରେ ମୁଁ ପରା ଦୁଇଟା ଛୁଆଙ୍କର ମାଆ ଓ ବାପା ହୋଇ ସେମାନଙ୍କୁ ବଢ଼ାଇଛି । ଏବେ ତ ସେମାନଙ୍କର ପର ଲାଗିଗଲାଣି । ସେମାନେ ଉଡ଼ି ଶିଖିଗଲେଣି, ମୁଁ ଏବେ ଆଉ ଗୋଟେ ଛୁଆର ମାଆ ବାପ ହେବି, ଦେଖିବ ଜମା ଅସୁବିଧା ହେବନି ।

ବାପାଙ୍କ କଥାରେ ଯୋଗ ଦେଇ ମୁଁ କହିଲି—ବୁବୁନ୍ ମୋତେ ଏପରି ଆଦରି ଯାଇଛି ଯେ ସେ ନାନୀକୁ ଜମା ଖୋଜୁ ନାହିଁ । ମୋ ହାତରେ ଖାଇବା, ମୋରି ପାଖରେ ଶୋଇବା ଓ ମୋ ସାଥିରେ ଖେଳିବା ଭିତରେ ସେ କେବେ ଥରେ ମନେ ପକାଉ ନାହିଁ ନାନୀକୁ । ମୁଁ ଭାବୁଛି ବୁବୁନ୍‌ର ମା'କୁ ଛାଡ଼ି ରହିବା ଜନିତ କୌଣସି ଅସୁବିଧା ହେବ ନାହିଁ ଏଠାରେ; ବରଂ ଖୁବ୍ ଭଲରେ ରହିଯିବ ସେ ମୋ ପାଖରେ ।

ସେବେଠାରୁ ବୁବୁନ୍ ରହିଯାଇଥିଲା ମୋ ପାଖରେ, ଛଅ ସାତ ମାସରୁ ଆସି ଛଅ ସାତ ବର୍ଷର ହେଲାଣି । ଦରୋଟି ହସରୁ ଦରୋଟି କଥା, ଥୁରୁ ଥୁରୁ ଚାଲିରୁ ଦୌଡ଼ିବା ଯାଏଁ ମାଆ ପରି ସହିଆସିଥିଲି ତା'ର ସବୁ ଅଝଟପଣର ଅଦୌତିକୁ । ମୁଁ ତାକୁ ଜନ୍ମ କରି ନ ଥିଲି ସତ ମାତ୍ର ସେ ମୋତେ ଦେଇଛି ମାତୃତ୍ୱର ଅନୁଭବ । ସେ ଛୋଟ ଥିବା ବେଳେ, ତାକୁ ଛାତିରେ ଶୁଆଇ ଦେଇ ଧୋ ଧୋ ବାୟା ଶୁଣାଇବାବେଳେ ଅନେକଥର ଏମିତି କାମନାଟିଏ ମନକୁ ଆସିଛି - ସଞ୍ଚରି ଯାଆନ୍ତା କି ମୋ ସ୍ତନର କ୍ଷୀର, ବୁବୁନ୍ ତାକୁ ଚୋଷି କରିଦିଅନ୍ତା ନିଃଶେଷ । ମୁଁ ପାଇଯାଆନ୍ତି ପୂର୍ଣ୍ଣାଙ୍ଗ ମାତୃତ୍ୱର ଅନୁଭବ । ଏମିତି ଚିନ୍ତା ଧୀରେ ଧୀରେ ମୋର ଅବଚେତନ ମନରୁ ସଚେତନ ମନକୁ ଆସିବାକ୍ଷଣି ମୁଁ ପ୍ରକୃତିସ୍ଥ ହୋଇଯାଏ ଯେ ବୁବୁନ୍ ସଞ୍ଚରି ନାହିଁ ମୋ ଜରାୟୁରେ, କେବଳ ସଂଚରି ଯାଇଛି ମୋ ହୃଦୟରେ । ମୁଁ ତା'ର କୁମାରୀ

ମାଆ । ତାକୁ ସ୍ତନ୍ୟପାନ କରାଇବାର ସୌଭାଗ୍ୟ ମୋର ନାହିଁ କିମ୍ବା ସେ ଅନୁଭବ ଟିକକ ସେ ମୋତେ ଦେଇପାରିବ ନାହିଁ ଚିରକାଳ ।

ନାନୀ ଯେତେବେଳେ ଆସୁଥିଲା ଆମ ଘରକୁ - ବୁବୁନ୍ ତାକୁ ଆଉ ଆଦରି ପାରୁ ନ ଥିଲା । ସେ ତାକୁ ଯେତେ ପ୍ରଲୋଭନ ଦେଖାଇ ତା'ର ମାତୃତ୍ୱ ଜାହିର କରିବାକୁ ପ୍ରବର୍ତ୍ତାଉଥିଲା ମଧ୍ୟ ସେ ଭୂତ ଦେଖିଲା ପରି ବାଉଳି ଖାଇ ତା ପାଖରୁ ମୋ ପାଖକୁ ଚାଲି ଆସୁଥିଲା, ତାକୁ କୁଣ୍ଠା ପ୍ରକାଶ ମଧ୍ୟ କରୁଥିଲା, ମୋର ଧମକ ଚମକ ଓ ବାଧବାଧକତାସତ୍ତ୍ୱେ ସେ ତାକୁ ନୂଆ ମାଆ ବୋଲି କେବଳ ଡାକୁଥିଲା । ନାନୀ ତା'ର ଅଜବ ପରିବର୍ତ୍ତନ ଦେଖି କହୁଥିଲା - ମୁଁ ଯଶୋଦା କଥା ଶୁଣିଥିଲି, ହେଲେ ଏବେ ଦେଖିଲି ଅସଲ ଯଶୋଦାକୁ । ମୁଁ ତାକୁ କହୁଥିଲି - ତୁ ଜମା ବ୍ୟସ୍ତ ହଅନି, ହାତୀ ଜଙ୍ଗଲରେ ବୁଲୁଥିଲେ ଯେମିତି ରାଜାଙ୍କର, ଠିକ୍ ତୋ ପୁଅ ଯେଉଁଠି ବଢୁଥିଲେ ବି ତୋର ।

ମୋତେ ଲାଗୁଥିଲା ମୁଁ କେବଳ କାୟିକ ଭାବେ ସ୍ଥାନାନ୍ତର ହୋଇ ଆସିଛି ଶାଶୂଘରକୁ, କିନ୍ତୁ ମୋର ମନ ଓ ଆତ୍ମା ରହିଯାଇଅଛି ବୁବୁନ୍ ପାଖରେ । ତା କଥା ଯେତେ ଯେତେ ଭାବୁଥିଲେ ସେତେ ସେତେ ଅସ୍ଥିର ଓ ଚଞ୍ଚଳ ଲାଗୁଥିଲା ନିଜକୁ । ଗୋଟେ ବିଚିତ୍ର ଆବେଗ ଅଧୀର କରୁଥିବା ଭିତରେ ଶାଶୂଘର ବାହାଘରଜନିତ ଗହଳି ଚହଳି, ବୋହୂଦେଖା ଭିଡ଼ ଅଥଚ ମୋ ଭିତରେ ଏକଲାପଣ ମୋତେ ଅସ୍ଥିର କରିପକାଉଥିଲା, ହଠାତ୍ ଚମକି ପଡ଼ିବା ପରି ଚିନ୍ତାଟିଏ ଆସୁଥିଲା ବାରମ୍ବାର - ରାତି ଆସି ଏତେ ହେଲାଣି, ବୁବୁନ୍ ଏବେ କରୁଥିବ କ'ଣ ? ସେ ଶୋଇଥିବ କେମିତି ? ନାନୀ କ'ଣ ସତରେ ତାକୁ ସମ୍ଭାଳି ପାରିଥିବ ?

ରାତି ବଢ଼ିବା ସହ ଧୀରେ ଧୀରେ କମି କମି ଯାଉଥିଲା ଗହଳ ଚହଳ ଓ ସୋରଶବ୍ଦ । ଧୀରେ ଧୀରେ ସେ ଶବ୍ଦ ପୂରା କମିଗଲା, କିଛି ସ୍ତ୍ରୀଲୋକ ଆସିଲେ ମୋତେ ନେଇଯିବାପାଇଁ ଶୋଇବାଘରକୁ । ମୋତେ ଶୋଇବାଘରର ପଲଙ୍କ ଉପରେ ବସାଇଦେଇ ସେମାନେ ଚାଲିଯିବା ପରେ ଗୋଟେ ବିଚିତ୍ର ଖାଁ ଖାଁ ଭାବ ମୋତେ ଆବୋରି ବସିଲା, ଆଜିଯାଏଁ ମୋ କୋଳରୁ ଅଲଗା ହୋଇ ଶୋଇ ନ ଥିବା ବୁବୁନ୍ ଏବେ ଶୋଇ ନ ଥିବ ନା । ମୋତେ ଲାଗୁଥିଲା ଏଇ ଯେମିତି ସେ ଆସିବ ମୋ କୋଳକୁ, ମୁଁ ତାକୁ ଶୁଆଇପକାଇବି ଧୋ-ବାୟା କରି । ପରମୁହୂର୍ତ୍ତରେ ପୁଣି ଭାବୁଥିଲି - ବୁବୁନ୍ ଏଠି ଆସିବ କୁଆଡୁ ? ଏଇଟା ମୋର ଶାଶୂଘର, ଏଠି ଓ ଆଜିପରି ରାତିରେ ମୋ ବିଛଣାରେ ବୁବୁନ୍‌ର ଉପସ୍ଥିତି ଗୋଟେ ଉଦ୍‌ଭଟ କଳ୍ପନା ମାତ୍ର ଜାଣି ମଧ୍ୟ ମୁଁ ସେଥିରୁ ନିଜକୁ ନିବୃତ୍ତ କରିପାରୁ ନ ଥିଲି ।

ଏହି ସମୟରେ ପାଖଘରୁ କୌଣସି ଗୋଟେ ଛୁଆର କାନ୍ଦିବା ଶବ୍ଦ ଶୁଭିଲା, ସେ କାନ୍ଦଣାର ସ୍ୱର ବୁବୁନ୍‌ର କାନ୍ଦଣାର ସ୍ୱର ସହ ଏମିତି ମିଶିଯାଇଥିଲା ଯେ ତାହା ମୋତେ ବିବ୍ରତ ଓ ବ୍ୟତିବ୍ୟସ୍ତ କରିପକାଇଲା, ଇଚ୍ଛା ହେଉଥିଲା ଦଉଡ଼ିଯାଇ ଦେଖିବି କି କିଏ ସେ ଛୁଆଟି ? ବୁବୁନ୍‌ର କାନ୍ଦ ବନ୍ଦ ନ ହେବାରୁ ତାକୁ କିଏ ଧରିକି ଏଠାକୁ ଆଣିଲେ କି । ପୁଣି ଭାବୁଥିଲି ମୁଁ ଏବେ ନୂଆବୋହୂ । ଏ ଘରଭିତରୁ ବାହାରିଯାଇ କାହାକୁ ପଚାରିବାର ସୁଯୋଗ ମୋର ଆସିନି, ମୁଁ ଏମିତି ଯାଇ ପଚାରିଲେ ଏଠି ସବୁ ହସିବେ ମଧ୍ୟ, ମୋ ମନକୁ ବୁଝାଇ ଦେଉଥିଲେ ମଧ୍ୟ ବୁଝାଇ ପାରୁ ନ ଥିଲି ହୃଦୟକୁ । ବୁବୁନ୍‌ର ସ୍ମୃତି ବୁବୁନ୍‌ର ଶୈଶବରୁ ଆଜିଯାଏଁ ସମସ୍ତ ଫଟୋର ଆଲବମ୍ ।

ଆରେ ଇଏ କଣ ? ଆଲବମ୍ ସହ ବୁବୁନ୍‌ର କେତେହଳ ଡ୍ରେସ୍ ମଧ୍ୟ ଏଠାରେ କିପରି ରହିଯାଇଛି ? ମନେପଡ଼ିଲା ମୁଁ ବାକ୍ସ ସଜାଡ଼ିବା ବେଳେ ବୁବୁନ୍ କହୁଥିଲା ମାମା, ତମ ଶାଢ଼ି ସହ ମୋ ଡ୍ରେସ୍ ମଧ୍ୟ ରଖିଦିଅ, ଆମେ ଦୁଇଜଣ ତମ ଶାଶୁଘରକୁ ଚାଲିଯିବା, ମୁଁ ତାକୁ ଥଟ୍ଟାରେ କହିଥିଲି - ହଉ ଦେ, ତୋ ଡ୍ରେସ୍ ବି ଏଠି ରଖିଦେବା । ଦେଖ ତ, ସତକୁ ସତ କେମିତି ରହିଯାଇଛି ତା'ର ଡ୍ରେସ୍ !

ବୁବୁନ୍‌ର ଡ୍ରେସ୍‌କୁ ଜାବୋଡ଼ି ଧରିଲି ଛାତିରେ, ତା ଡ୍ରେସ୍ ମଧ୍ୟରୁ ଆସୁଥିଲା ତା ଦେହର ଏକ ଚମତ୍କାର ବାସ୍ନା, ମୁଁ ଆତ୍ମବିସ୍ମୃତ ହୋଇଗଲି କିଛିକ୍ଷଣ, ଶୁଂଘି ଚାଲିଥିଲି ତା'ର ଡ୍ରେସ୍‌କୁ । ଏପରି ଭାବେ କେତେ ସମୟ କଟିଛି ମୁଁ ଜାଣେନା, ପ୍ରକୃତିସ୍ଥ ହେବା ବେଳକୁ ଦେଖିଲି ମୋ ସ୍ୱାମୀ ଛିଡ଼ା ହୋଇଛନ୍ତି ମୋ ସାମ୍ନାରେ, ତାଙ୍କୁ ଦେଖି ମୁଁ ଫେରିଆସିଲି ମୋର ସ୍ୱାଭାବିକତାକୁ ।

ବାସର ରାତିର ଔପଚାରିକତା ପରେ କିଛିକ୍ଷଣ ମଧୁର ଆଳାପ । ପରେ ପରେ ଲିଭିଗଲା ସମସ୍ତ ଆଲୋକ, କେବଳ ଯାହା ବାସର ଦୀପଟି ସ୍ତିମିତ ଆଲୋକିତ କରୁଥିଲା ଘରଟିକୁ, ମୁହଁ ଦେଖା ମହଲଣ ଅନ୍ଧାର ଭିତରେ ନିବିଡ଼ ଆଶ୍ଳେଷ ଓ ବାହୁବନ୍ଧନ । ଘନ ଘନ ଖରଶ୍ୱାସ ଓ ଦୁଇଟି ଥରିଲା ଥରିଲା ଓଠ, ସରୀସୃପ ପରି ଖେଳିବୁଲୁଥିଲା ଦୁଇଟି ହାତ ପାଦରୁ ମୁଣ୍ଡ ଓ ଥାନରୁ ଅଥାନ ଯାଏଁ । ଧୀରେ ଧୀରେ ଖୋଲିଯାଇଥିଲା ଶାଢ଼ି, ସାୟା ଓ ଅନ୍ତର୍ବାସ । ଗଭୀର ଆଶ୍ଳେଷ ମଧ୍ୟରେ ଦୁଇଟି ଥରିଲା ଓଠ ଚୁମି ଯାଉଥିଲା ମୋର ଆଖି, ନାକ, ଗ୍ରୀବା ଓ ସ୍ତନାଗ୍ର, ଧୀରେ ଧୀରେ ଓଠ ଦୁଇଟା ସ୍ଥିର ହୋଇଗଲା ସ୍ତନାଗ୍ରରେ, ଘନ ଘନ ଗଭୀର ଚୁମ୍ବନ । ଚୁମ୍ବନରୁ ଚୋଷଣ, ସେଇ ଚୋଷଣ ମୁହୂର୍ତ୍ତଟି ହିଁ ଥିଲା ମୋ ପାଇଁ ଚରମ

ମୁହୂର୍ତ୍ତ, ମୋ ଅବଚେତନ ମନରେ ବସାବାନ୍ଧି ରହିଥିବା ମାତୃତ୍ୱର ଆବେଗଟି ହଠାତ୍ ସଞ୍ଚରିଗଲା ମୋ ଭିତରେ, ସେହି ଆବେଗ ସ୍ପନ୍ଦିତ ମୁହୂର୍ତ୍ତ, ଯାହାପାଇଁ ପ୍ରତୀକ୍ଷା ଥିଲା ଆଜିଯାଏ, ପରମ ପରିତୃପ୍ତିରେ ଭରିଦେଲା ମନ ଓ ପ୍ରାଣକୁ । ମାତୃତ୍ୱର ଆବେଗ ଓ ଦେହରୁ କ୍ଷୁଧାର ଏକ ବିଚିତ୍ର ମିଶ୍ରଣରେ ମୁଁ ଭାଙ୍ଗି ଯାଉଥିଲି ଭିତରେ ଭିତରେ । ତରଳି ଯାଉଥିଲା ମୋର କୁମାରୀତ୍ୱର ବରଫ । ଭିତରୁ ଝରି ଆସୁଥିଲା ଏକ ଅବରୁଦ୍ଧ ମାତୃତ୍ୱର ଝର । ଏକ ତନ୍ଦ୍ରାଛନ୍ନ ଆବେଶରେ ମୋତେ ଲାଗୁଥିଲା ମୁଁ ପହଞ୍ଚି ଯାଇଛି ଆଦିମାତୃତ୍ୱ ପାଖରେ, ପାଟିରୁ ମୋର ବାହାରି ପଡ଼ିଲା – ଆହାଃ ବୁବୁନ୍ ! କେତେ ଯୁଗରୁ ମୋର ଅପେକ୍ଷା ଥିଲା ଏହି ମୁହୂର୍ତ୍ତଟିକୁ, କେତେଯୁଗରୁ ... !

# ଭୋକର ଭୂଲୋକ

ଆଷାଢ଼ ମାସରେ ବି ମୁଣ୍ଡଫଟା ଖରା । ଜଳିଯାଉଛି ଗଛପତ୍ର । ଖରାର ଉତ୍ତାପ ସହି ନ ପାରି ଗଛରୁ ଖସିପଡୁଛନ୍ତି ଚଢ଼େଇ, ଚିରୁଗୁଣି । ଗାଆଁ ମୁଣ୍ଡ ମୁଣ୍ଡିଆ ପାହାଡ଼ଟା ଖରାପଡ଼ିବାକ୍ଷଣି ସତେ ଯେମିତି ପାଲଟି ଯାଉଛି ନିଆଁମୁଣ୍ଡାଟେ । ରାତି ଅଧରେ ମଧ୍ୟ ମୁଣ୍ଡିଆ ଉପର ଦେଇ ବହୁଥିବା ପବନ ଝାଇଁ ମାରି ଦେଉଛି ଦିହରେ । ରାତିସାରା ବି ଥଣ୍ଡା ହେଉନି ସେ ଗୁଣ୍ଡିଆଖଣ୍ଡକ । କୂଅ, ପୋଖରୀ ସବୁ ଶୁଖିଲା ଠନ୍‌-ଠନ୍‌ । ସରକାରୀ କଳରେ ବେଙ୍ଗ ମୂତିବା ପରି ନାଆଁକୁ ମାତ୍ର ପାଣି ବାହାରୁଛି । ଟୋପେ ପିଇବା ପାଣି ପାଇଁ ରାତି ଅଧରୁ ପିଲାଛୁଆ, ଝିଅ ମାଇପେ ସେଠି ଲାଇନ୍‌ ଲଗାଇ ଠିଆ ହୋଇ ରହୁଛନ୍ତି—ଗାଆଁ ଠାକୁରାଣୀଙ୍କ ହୁକୁମ ପାଖରେ ଅଧିଆ ପଡ଼ିବା ପରି । ସରକାର ଯେଉଁ ମରୁଡ଼ି ମହାବନ୍ଧ ଖୋଳାଇଥିଲେ ସେଠି ଏବେ ଗାଆଁ ପିଲାଏ କ୍ରିକେଟ୍‌ ଖେଳୁଛନ୍ତି । ପାଣିପାଇଁ ହାହାକାର ପଡ଼ିଗଲାଣି ଚାରିଆଡ଼େ ।

ଗାଆଁ ସରପଞ୍ଚ ସନାତନ ପଧାନଙ୍କ ବାଟ ଓଗାଳି ପଚାରିଲା ଦୁଲା ମାଝୀ —ହଜୁର ! ଏଥର ପାଣି କଥା ସରକାର କ'ଣ କହୁଛନ୍ତି ?

ଇନ୍ଦ୍ର କ'ଣ ସରକାରଙ୍କ କଥାରେ ଅଛନ୍ତି କି ଦୁଲା, ସରକାର ଯେତେବେଳେ କହିବେ ସେ ବରଷାଇ ଦେବେ ବରଷା !

ନାଇଁମ, ସେକଥା ନୁହଁ - ସରକାରଙ୍କ ରେଡ଼ିଓ, ଟିଭି ତ କିଛି ଗୋଟେ କହୁଥିବ ନା ବରଷା କେବେ ଆସିବ ବୋଲି ।

ଓହୋ ଏ କଥା । ହଁ - ଟିକେ ବିଳମ୍ବରେ ଏଥର ବରଷା ଆସିବ ବୋଲି କହୁଛନ୍ତି ହେଲେ ଭଲ ବରଷା ଅଛି । ଚାଷ ବାସ ବେଳକୁ ବରଷା ଆସିଯିବ । ଏ ପାଣିପାଗର ମତିଗତିକୁ ତ ଏଥର ବୈଜ୍ଞାନିକମାନେ ବୁଝିପାରୁ ନାହାନ୍ତି । ଆମେ ବା କି ଛାର ଲୋକ । ତେବେ ମୁଁ ଭାବୁଛି ବରଷାପାଇଁ ଆମ ଗାଆଁବାଲାଏ ମିଶି ଗୋଟେ ଯଜ୍ଞ କରିବା । ବେଙ୍ଗ ବାହାଘର ବି କରିବା । ଯେଉଁଠି ବିଜ୍ଞାନ ଫେଲ ହୁଏ ସେଠି ତ ଭଗବାନ୍‌ଙ୍କ ପୂଜାଅର୍ଚ୍ଚନା କାମ ଦିଏ । ଦେଖିବା କ'ଣ ହେଉଛି ।

ଆମ ଗାଆଁରେ କିଛି କାମଦାମପାଇଁ ପଞ୍ଚାୟତ ଅଫିସ୍‌ରୁ ଅର୍ଡ଼ର ଆସିଛି କି ନାଇଁ ମହାପ୍ରୁ ?

କାମଦାମ ନା ଛେନାଗୁଡ଼ ଏଇନେ ହେବ। ଏବେ ତ ବ୍ଲକ ଅଫିସରେ ଢମଣା ପଶିଛି। ବି.ଡି.ଓ.ଙ୍କ ନାଆଁରେ କେଶ୍‌ । ସେ ତ ଗିରଫ ଭୟରେ ଲୁଚି ବୁଲୁଛନ୍ତି । ସେ ଝମେଲା ଏଇନେ ସହଜରେ ତୁଟିବ ନା କାମଦାମ କିଛି ହେବ ।

ହାତରେ କାମ ନାହିଁ ବୋଲି ପେଟ କ'ଣ ସେକଥା ବୁଝୁଛି ମହାପ୍ରୁ । ଆତୁରେ ନିୟମ ନାସ୍ତି । ବିହନ ପୁଡ଼ିଆ ଖୋଲି ଖାଇଲୁଣି । ଜୀବନ ଥିଲେ ସିନା ଚାଷ ବାସ । ଯଦି ବରଷା ହୁଏ ତେବେ ଦେଖିବା କେଉଁଠୁ ଉଧାର କରଜ କରି ବିହନ ବୁଣିବି ।

ବର୍ଷା ପାଇଁ ଯଜ୍ଞ ହେଲା, ବେଙ୍ଗ ବାହାଘର ବି ହେଲା, ହେଲେ ବର୍ଷାର ଦେଖା ନାହିଁ । ଆଷାଢ଼ର ଶେଷ ଆଡ଼କୁ ଦିନେ ଦିନେ ଆକାଶରେ ଘୋଟି ଆସିବ କଳାମେଘ । ମେଘ ଉଠାଇବା ସାଙ୍ଗକୁ ଥିବ ଥିବ କେଉଁଠୁ ସୁ-ସୁ ହୋଇ ବହିଆସିବ ପବନ । ପବନ ତ ନୁହେଁ ଏକରକମ ବାତ୍ୟା, ଭାଙ୍ଗିପକାଇବ ଗଛ ବୃଛ, ଉଡ଼ାଇ ନେବ ମେଘ । ଲାଗିବ ସତେ ଯେପରି ପବନ ମେଘକୁ ତାଗିଦ୍ କରି କହୁଛି ଏଠିକୁ ପଶିବାର ତୋର ଅଧିକାର ନାହିଁ । ଯେମିତି ଘଡ଼ିକ ମଧ୍ୟରେ ଘୋଟି ଆସିଥିବ ମେଘ ସେମିତି ଉଭାଇଯିବ ନିମିଷକ ମଧ୍ୟରେ । ମେଘର ଆଶା ମନରେ ଦାନା ବାନ୍ଧିଥିବ କି ନାହିଁ ଟାଇଁଟାଇଁଆ ଖରା ଡାହାଣୀର ଜିଭ ପରି ହେବ ଲହ ଲହ ।

ପହିଲି ଶ୍ରାବଣରେ ଭାଙ୍ଗିଲା ଇନ୍ଦ୍ରଙ୍କ ଗୁମାନ । ଆନ୍ଧ୍ରରେ ହେଲା ଲଘୁଚାପ । ବର୍ଷାର ଆରମ୍ଭରୁ ହିଁ ଲାଗିଲା ଦୁଇଦିନ ଝଡ଼ି । ରେଡ଼ିଓ କଥା ସତ ହେଲା ବୋଲି ମନରେ ଭରସା ଆସିଲା, ଏଥର ବିଳମ୍ବ ହେଲେ ମଧ୍ୟ ବର୍ଷା ଭଲ ଅଛି ।

ଚାରି ମାସ ଯାଏଁ ଖରା ଖାଇ ଖାଇ ଝାଇଁ ମାରିଯାଇଥିବା ମାଟି ଦି'ଦିନରେ ଝଡ଼ି ବରଷାକୁ ସ୍ୱାହା କରିନେଲା । ନା କୂଅରେ ଝରିଲା ପାଣି ନା ପୋଖରୀକୁ ଗଡ଼ିଲା ପାଣି, କିନ୍ତୁ ସଭିଙ୍କ ମନରେ ଭରସା ଥିଲା, ବର୍ଷାର ଖିଅ ଖୋଲିଲାଣି ଯେତେବେଳେ ଆଉ ଭୟ କାହାକୁ । ସମସ୍ତେ ଯେଝା ଯେଝା ଜମିରେ ବୁଲାଇଲେ ହଳ, ବୁଣିଲେ ବିହନ । ହେଲେ ବର୍ଷା ସେହି ଦୁଇଦିନପାଇଁ ଭେଳିକି ଦେଖାଇ ଚାଲିଗଲା ଯେ ଗଲା - ଆଉ ଦେଖାଦର୍ଶନ ମିଳିଲା ନାହିଁ । ବର୍ଷା ପାଇଁ ଅପେକ୍ଷା ପରିଣତ ହେଲା ଆକୁଳତାରେ । ଧୀରେ ଧୀରେ ଜମିରେ ଦୁଇପତ୍ର ମେଲିଥିବା ଗଜାଧାନ ଶୁଖି ଶୁଖି ମାଟିରେ ଲାଗିଲା, ହେଇ ବର୍ଷା ହେବ - ହେଇ ବର୍ଷା ହେବ, ଅପେକ୍ଷାରେ ବିତିଗଲା କିଛି ଦିନ, ଯେମିତି ଫୁଟିଥିଲା ବିହନ, ସେମିତି ପୋଡ଼ିଗଲା ଗଛ । କ୍ଷେତ ଉଜୁଡ଼ି ସାରିବାପରେ ଶ୍ରାବଣର ମଝିଆ ମଝି ପୁଣି ଥରେ ଲାଗିଲା ଝଡ଼ି । ଚାଷୀକୂଳର ମନରେ ଭରସା ହେଲା ଯେ ଏଥର ବୋଧେ ବରଷା ଆଉ ଭେଳିକି ଦେଖାଇବ ନାହିଁ । ଏନ୍ତୁଡ଼ିଶାଳରୁ କୋଳ ଖାଲି ହୋଇଯାଇଥିବା ଛୁଆର ମାଆ ପରି ପୁଣିଥରେ ଚାଷୀକୁଳ ଚାଷର ଅଭିସାର ରଚିଲେ । ଆରମ୍ଭ ହେଲା ବିହନ ବୁଣା ଓ ତଳି ପକା ।

ଶ୍ରାବଣର ଶେଷ ବେଳକୁ ବରଷା ଉପରେ ଭରସା କରି ଚାଲିଲା ଗୁଆ ଗୁଇ, ଗୁଆ ଗୁଇ ଠିକ୍ ସରିବାବେଳକୁ ବରଷା । ଠିକଣା ହୁଡ଼ିଲା ପରି ଚାଲିଗଲା ଯେ ଗଲା - ଆଉ ଦେଖାଦର୍ଶନ ମିଳିଲା ନାହିଁ । ବୁଣା ଜମିରେ ଧାନଗଛ ସବୁ ଶୁଖି ଶୁଖି ଘାସରେ ମିଶିଲା । ଗୁଆ ଜମି ସବୁ ବୋଡ଼ା ପିଠି ପରି ଫାଟି ଆଁ କଲା । ଭାଦ୍ରବ ମାସରେ ବି ରହିଲା ନାହିଁ ବର୍ଷାର ନାଆଁ ଗନ୍ଧ । ଯେମିତି ଗୁଆ ହୋଇଥିଲା ଧାନ, ଠିକ୍ ସେଇ ଅବସ୍ଥାରେ ଶୁଖି ଶୁଖି ମାଟିରେ ମିଶିଲା ।

ଗାଁଆଁରେ କାମଧନ୍ଦା ମିଳୁ ନ ଥିଲା ବୋଲି ତ ପେଟର ଦାଉରେ ବିହନକୁ ଖାଇଦେଇଥିଲା ଦୁଲା । ବରଷାକୁ ଦେଖି ମହାଜନୀ କରଜ ଆଣି ତଳି ପକାଇ ଧାନ ରୋଇ ଥିଲା । ତା'ର ଭରସା ଥିଲା ଶୁଝିବାକୁ ବୋଝ ହେବନି । ସେତକ ବି ଗଲା । ମୁଣ୍ଡରେ ହାତ ଦେଇ ବସିବାବେଳେ ତା' ସ୍ତ୍ରୀ ତାକୁ ପଚାରିଲା - ଏବେ କରିବା କ'ଣ ? ଯେଉଁ ଚାଷକୁ ତ ଭରସା କରିଥିଲେ ସିଏ ଦଗା ଦେଲା । ଗାଁଆଁ ଗଣ୍ଡାରେ ତ କାମ ମିଳୁନି କୁଲିଭୂତି କରି ପେଟ ପୋଷିବାକୁ । ତା' ଉପରକୁ ପୁଣି ଏ ମହାଜନ କରଜ ।

ମୁଁ ତ ସେଇକଥା ଭାବୁଛି ଲୋ କରିଆ । ମକାରଖେଦାରେ ସମସ୍ତେ ଯେତେବେଳେ ଗାଁଆଁ ଛାଡ଼ି ହାଇଦ୍ରାବାଦକୁ ଟିକେଟ କାଟିଲେ ଇଟା ପକାଇବାପାଇଁ — ମୁଁ ହସୁଥିଲି । କହୁଥିଲି ନିଜ ମାଟିରେ କ'ଣ ଏ ପେଟ ଚାଖଣ୍ଡକ ପୂରିବ ନାହିଁ ଯେ ଗାଁଆଁ ଛାଡ଼ି ଯିବି ପରଦେଶକୁ ପେଟ ପୋଷିବାକୁ । ଆଜି ଭାବୁଛି ମୋର ସେହି ହସିବାଟା ମୋତେ କାଳ ହେଲା । ସେତେବେଳେ ତାଙ୍କ ସାଙ୍ଗରେ ଚାଲିଯାଇଥିଲେ ଖାଇପିଇ ନିଶ୍ଚେ ଟଙ୍କା ପାଁ ସାତ ହଜାର ବଳାଇ ଫେରିଥାଆନ୍ତି, ନା ମୋ ଉପରେ ଏଭଳି ଚାଷ ଉଜୁଡ଼ି ଯିବାର ଚିନ୍ତା ଥାଆନ୍ତା ନା କରଜର ବୋଝ ।

ତମେ କ'ଣ ଜାଣିଥିଲେ ଯେ ଏକଥା ମୁଁ ତମକୁ ଦୋଷ ଦେଉଛି ବୋଲି ଭାବୁଛ । ଇନ୍ଦ୍ର ଦେବତା କୋପ କଲା, ସେଥିକୁ ହାତ କାହାର । ହେଲେ ଏଇନେ କ'ଣ କରିବା ସେ କଥା ଚିନ୍ତା କର ।

ମୁଁ ଭାବୁଛି ଚାଲିଯିବି ଇଟା ପକାଇବାପାଇଁ କରିମ୍ ନଗର । ମହନା କହୁଥିଲା ସେଠି ଯାହାକୁ ଯେତେ କାମ, ଖାଲି ପହଞ୍ଚିଗଲେ ଟଣାଓଟରା ଲାଗନ୍ତି କାମ ଦେବାପାଇଁ । ଦେଖୁନୁ ସେମାନେ ଫି'ବରଷ ପିଲାଛୁଆ ଧରି ପଳାଉଛନ୍ତି । ମାସ ଚାରିପାଞ୍ଚଟା ଖଟି ବର୍ଷସାରାର ପେଟ ଚିନ୍ତା କରୁ ନାହାନ୍ତି ।

ତମେ ଏକା କାହିଁକି ଯିବ - ଆମେ ସଭିଏଁ ଚାଲିଗଲେ କେନ୍ତା ହୁଅନ୍ତା ?

ସେଠି ପହଞ୍ଚ କେନ୍ଠି ରହିବା ଓ କେନ୍ତା ରହିବା ତା'ର କ'ଣ କିଛି ଠିକଣା ଅଛି । ସେଥିରେ ବଢ଼ିଲା ଝିଅଟାକୁ ଧରି କେନ୍ଆଡ଼େ ଯିବା ?

ସେକଥା ତ ଠିକ୍, ହେଲେ ଏକା ବୋକା ବୋଲି କଥାକୁ କହିନି । ସେଠି ତ କୁତ ହିସାବରେ କାମ । ଯେତେ ଅଧିକା କଲ ସେତେ କମାଇ । ମୁଁ କ'ଣ କହୁଥିଲି କି ଆମେ ତିନିଜଣଯାକ ଚାଲିଗଲେ ଭଲ ଦି' ପଇସା କମାଇ କରି ଆଣି ପାରନ୍ତେ । ମହାଜନର କରଜ ଶୁଝି ନନୀଟା ବିହା ବି କରିଦିଅନ୍ତେ । ସେ କାଳିମାଟିର ଉଆଁସୁ ବୁଢ଼ା ତ କେତେଥର ମାଗି ଆସିଲାଣି ନନୀର ହାତ । ଇନ୍ଦ୍ର ଯୋଜନାରେ ଗାଆଁବୁଡ଼ି ପଇସା ତାକୁ ମିଳିଛି ଏଇନା । କେଉଁଠି ଗୋଟେ ଜାଗା ଜମି ଖୋଜୁଛି - ଘର ବସାଇବ, ଚାଷ କରିବ । ସେଥିସାଙ୍ଗକୁ ପୁଅ ବିହାବି ।

ମୋର କ'ଣ ମନ ନାହିଁ କି, ତା' ପୁଅ ବି ମୋର ପସନ୍ଦ । ଭାବିଥିଲି ଏଥର ଫସଲ ଭଲ ଫଳିଲେ ମହାଜନର ପୁରୁଣା କରଜ ଚୁକ୍ତା କରିଦେଇ ଝିଅ ବିହାପାଇଁ କରଜ ଆଣିଥାଆନ୍ତି । ହେଲେ ସବୁ ତ ଫସର ଫାଟିଗଲା ।

ଏଇନେ ଆଉ ପଛକଥା ଭାବି ଲାଭ କ'ଣ ? ଏବେ ଏ ଜମିକୁ ବନ୍ଧା ପକାଇ ବାଟ ଖର୍ଚ୍ଚପାଇଁ କିଛି ଟଙ୍କା କରଜ ଆଣ । ମୁଁ ମହନା ଘରୁ ତା' ଠିକଣା ମାଗି ଆଣୁଛି । ଯାଇ ଦେଖିବା ସେଠି ଆମ ଭାଗ୍ୟରେ କ'ଣ ଅଛି ।

ସେମାନେ ପ୍ରସ୍ତୁତ ହୋଇପଡ଼ିଲେ କରିମ୍‌ନଗର ଯିବାପାଇଁ, ସମସ୍ତଙ୍କର ଲୁଗାପଟାକୁ ବାନ୍ଧିଲେ ଗୋଟେ ବୁଜୁଳିରେ । ହାଣ୍ଡି, କଡ଼େଇ, ଚାମଚ, ଖଡ଼ିକାକୁ ଗୋଟେ ଜରିବସ୍ତାରେ, ଆସବାବପତ୍ର ବୋଇଲେ ତ ବାସ୍ ଏତିକି ଥିଲା । ସବୁ ରୁଣ୍ଡେଇ ଗାଣ୍ଡେଇ ଆଣିଲାରୁ ଦୁଇଟି ବୁଜୁଳା ହେଲା । ତା' ପରକୁ ରହିଲା ଦି' ବଖରା ଖପର ଛାଉଣି ଘର । ଆଉ କ'ଣ ରହିଲା ଯେ ଘରେ କୋଲପଟିଏ ପକାଇବେ । ହେଲେ ଘରଟାକୁ ତ ସେମିତି ବେଛପରି କରି ଯାଇହେବନି । ତେଣୁ କବାଟରେ ଜଂଜିର ଲଗାଇ ଦେଇ ବବୁର କଣ୍ଟା ଗୋଛାଟିଏ ବିଡ଼ା କରି ଦୁଆର ମୁହଁରେ ବାନ୍ଧିଦେଲେ । ଘରକୁ ପଛକରି ବୁଜୁଳିଟିଏ ଲେଖାଏଁ ଧରି ବାହାରି ପଡ଼ିଲେ ତିନିଜଣ । ଗନ୍ତବ୍ୟ ଥିଲା ମହନାର ଠିକଣା ।

ବଡ଼ କଷ୍ଟରେ ଟ୍ରେନ୍‌ରେ ତଳେ ବସି ବସି ଯାଇ ପହଞ୍ଚିଲେ କରିମ୍ ନଗରରେ । କରିମ୍‌ନଗରରେ ପହଞ୍ଚିବା ପରେ ଏତେ ବଡ଼ ଜାଗା, ଏତେ ଲୋକ ହାଉଯାଉକୁ ଦେଖିଦେଇ ହାପ୍‌ସା ଶୁଖିଗଲା ଦୁଲାର । ଏ ଷ୍ଟେସନରୁ ମହନା ପାଖକୁ ଯିବାର ବାଟ କେଉଁଟା ଜାଣିପାରୁ ନ ଥିଲା ସିଏ । ପଢ଼ିପାରୁ ନ ଥିବା ଠିକଣାଲେଖା କାଗଜଟିକୁ ସେ ବ୍ୟାଗ୍‌ରୁ କାଢ଼ି କେବଳ୍ ଦେଖୁଥିଲା ବାରମ୍ବାର । କରିଆ ତାକୁ କହିଲା - ଠିକଣା ଦେଖାଇ କାହାକୁ ଗୋଟେ ପଚାରି ଦେଉନ କହିଦେବେ । ଷ୍ଟେସନରେ ଏପଟ ସେପଟ ହେଉଥିବା କିଛି ଯାତ୍ରୀଙ୍କୁ ସାହସ କରି ଦୁଲା

ଦେଖାଇଲା ମହନାର ଠିକଣା । ଠିକଣାଟିକୁ ଏପଟସେପଟ କରି ଥରେ ଦୁଇଥର ଦେଖିସାରି ତା'ଆଡ଼କୁ ବଢ଼ାଇ ଦେଇ ସେମାନେ କ'ଣ କହୁଥିଲେ ଆଦୌ ବୁଝିପାରୁ ନ ଥିଲା ମହନା । ଷ୍ଟେସନର ଗୋଟେ ବେଞ୍ଚ ଉପରେ ସ୍ତ୍ରୀ ଓ ଝିଅକୁ ବସାଇଦେଇ ସାହସ କରି ଷ୍ଟେସନ ବାହାରକୁ ଗଲା । ସେଠି ଗୋଟେ ଚା' ଦୋକାନରେ ଯାଇ ଦେଖାଇଲା ଠିକଣା । ଲେଦୁ କହି ସେ ଫେରାଇଦେଲା ଠିକଣାଟି । ଏମିତି ଏମିତି ହୋଇ ପାଖାପାଖି ପଚାଶ ଶହେ ଜଣକୁ ସେ ଦେଖାଇଲା ସେ ଠିକଣା ଲେଖା କାଗଜଟିକୁ । ଏ ହାତ ସେ ହାତ ହୋଇ କାଗଜଟି ଚିରି ଚିରି ଆସୁଥିଲା ସିନା କିନ୍ତୁ କେହି କହିପାରୁ ନ ଥିଲେ ଲେଖାଥିବା ଠିକଣାର ଜାଗା । କିଛି ସମୟ ଷ୍ଟେସନ ବାହାରେ ୟାକୁ ତାକୁ ପଚାରି ଫେରିଆସୁଥିଲା ଦୁଲା - ଷ୍ଟେସନରେ ବସିଥିବା ସ୍ତ୍ରୀ ଓ ଝିଅ ପାଖକୁ

କ'ଣ କିଛି ଖବର ପାଇଲ ? ଉତ୍କଣ୍ଠିତ ପ୍ରଶ୍ନ ଥିଲା ଉଭୟଙ୍କର ।

ନା - ଯାହାକୁ ଦେଖାଇଲେ ତ କେହି କିଛି କହିପାରୁ ନାହାନ୍ତି । କ'ଣ କରିବା ? କେଉଁ ଏକା ଅଛି ଯେ ଖେପିଯିବି ବାହାରକୁ, ଯାଇ ଖୋଜି ବାହାର କରିଦେବି ମହନାର ଠିକଣା । ଏ ବିଦେଶ ଜାଗାରେ ତମ ଦି' ଜଣଙ୍କୁ ଏକା ଛାଡ଼ି ଦେଇଗଲେ କେତେବେଳେ କେଉଁ କଥା କିଏ ଜାଣେ । ଠିକ୍ ଠିକଣାରେ ପହଞ୍ଚି ନ ପାରିଲେ ବି ଆହୁରି ବିପଦ । ଶୁଣି ନାହଁ କି ଆମ ଗାଆଁ ବୁଢ଼ିଆ ତାଣ୍ଡିର ଦଶା । କ'ଣ କଲେ ତା' ସ୍ତ୍ରୀକୁ ।

ହଉ ଦେଖିବା କ'ଣ ହେଉଛି କହି ଷ୍ଟେସନରେ ବସିରହିଲେ ଗୋଟେ ଦିନ । ଦିନ ଯାଇ ରାତି ହେଲା । ମାତ୍ର ମିଳିଲାନି ଠିକଣା । ପେଟରେ ଭୋକ ସମସ୍ତଙ୍କର, ଯାହା ଲିଆ ଗଣ୍ଡେ ଘରୁ ଆସିଲା ବେଳେ ଧରିଥିଲେ ତାକୁ ବାଟ ସାରା ଖାଇ ଖାଇ ଆସିଛନ୍ତି । ସେ ବି ଆଉ ଗଣ୍ଡେ ପଡ଼ିଛି ମୁଣାରେ, ଟଙ୍କା ଯେତିକି କରଜ ଆଣିଥିଲେ ସେଥିରୁ ଆଉ ଟଙ୍କା ପଚାଶଖଣ୍ଡ ବଳିଥିବ କି କ'ଣ । ସେଥିରୁ ଖାଇଦେଲେ କରିବେ କ'ଣ । ଯଦି ଘରକୁ ଫେରିବାକୁ ପଡ଼େ ତେବେ ଫେରିବେ କେମିତି ? ଏ ପରିସ୍ଥିତିରେ ଦୁଲାର ମୁଣ୍ଡରେ ବୁଦ୍ଧି ପଶୁ ନ ଥିଲା ସେ କରିବ କ'ଣ ?

ଶେଷଥର ପାଇଁ ଜଣକୁ ମହନାର ଠିକଣା ପଚାରିଲା ଦୁଲା । ଲୋକଟି ତାକୁ ପଚାରିଲା - ସେ କ'ଣ କରନ୍ତି ଏଠି ? ଇଟା ପକା - ଇଟା ପକାଳି । ଲୋକଟି ୟାର କଥା ଶୁଣିଦେଇ ହସି ପକାଇ କହିଲା - ମୁଁ ଭାବିଲି ଇଏ ଏମ୍.ପି., ଏମ୍.ଏଲ.ଏ. କିମ୍ବା କରିମ୍‌ନଗରର କଲେକ୍ଟର । କରିମନଗର କ'ଣ ଛୋଟିଆ ଜାଗାଟିଏ ହୋଇଛି ଯେ ମହନା ମାଝି, କରିମନଗର ଲେଖିଦେଲେ ଲୋକେ ତାକୁ ଖୋଜି ପାଇଯିବେ ।

ଦୁଲା ଭାବିଲା - ସତକଥା ତ, ଏତେବଡ଼ ଜାଗାରେ ମହନା ମାଝୀ, କରିମ୍‌ନଗର କହିଲେ କିଏ ଚିହ୍ନିପାରିବ ଯେ ? ଧୀରେ ଧୀରେ ମହନାକୁ ଖୋଜି ପାଇବାର ଭରସା ତା' ମନରୁ ତୁଟିଗଲା । ଶେଷରେ ସେ ନିଷ୍ପତ୍ତି ନେଲା - ନା ତାକୁ ପାଇବନି ଏଠି, ଘରକୁ ଫେରିଯିବ । ସେଠି ବରଂ ଦଶ କୋଶ ଯାଇ କାମ କରି ପେଟ ପୋଷିବ, ଏଠି ଏମିତି ଭୟ ଓ ଆଶଙ୍କା ମଧ୍ୟରେ ରହିପାରିବ ନାହିଁ ।

ଫେରିଯିବା ଯେ ହେଲେ ବାଟଖର୍ଚ୍ଚ - ପଚାରିଲା କରିଆ, ଟ୍ରେନ୍‌ରେ ବସିଯିବା । ଟିକେଟବାଲାକୁ କହିବା ଆମର ଅସୁବିଧା କଥା, ସିଏ ତେଣିକି ଯାହା କରିବ ।

ଯେମିତି ଉଲ୍ଲାସରେ ଆସିଥିଲେ କରିମ୍‌ନଗର, ସେମିତି ବିଷାଦରେ ସମସ୍ତେ ଫେରିଲେ ସ୍ୱପ୍ନଭଙ୍ଗ ହୋଇ । ଟ୍ରେନ୍‌ରେ ଟି.ଟି. ମାଗିଲା ଟିକେଟ୍ । ସେ ତାକୁ ତା'ର ଅସୁବିଧା କଥା ଅଧାଓଡ଼ିଆ ଓ ଅଧା ହିନ୍ଦୀ ମିଶାରେ କହିଲା, ଟି. ଟି. ତାକୁ ଦୟା କଲା କି କ'ଣ କହିଲା—ନିକାଲ କେତେ ପଇସା ଅଛି, ସବୁ ଝାଡ଼ିଝୁଡ଼ି ଟଙ୍କା ତିରିଶ୍‌ଟା ତା' ହାତକୁ ବଢ଼ାଇ ଦେଲା ଦୁଲା । ଗୋଟିଏ ପ୍ରଚଣ୍ଡ ଘୃଣାରେ ତା' ହାତରୁ ତିରିଶ ଟଙ୍କା ନେଇ ଟି.ଟି.ଇ. ତାକୁ ତାଗିଦ୍ କଲା ପରି କହିଲା—ସିଟ୍ ଉପରକୁ ଉଠିବ ନାହିଁ, ଏଇଠି ତଳେ ବସିକରି ଯିବ ।

ଟିକେଟ୍ ଝମେଲା ତୁଟି ଯିବାରୁ ବଳକା ଲିଆରୁ ଗଣ୍ଡେ ଗଣ୍ଡେ ଖାଇ ପେଟେ ପେଟେ ପାଣି ପିଇଦେଲେ ସମସ୍ତେ । ବସୁ ବସୁ ନିଦ ଆସିଗଲା ଆଖିକୁ । ରାତି ପାହି ସକାଳ ହେଲା । ରାତିରେ ଯାହି ଭୋକ ସମ୍ଭାଳି ହେଉଥିଲା, ଦିନକୁ ଅସମ୍ଭାଳ ହେଲା । ଦୁଲା ସମସ୍ତଙ୍କୁ ଆଶ୍ୱାସନା ଦେଇ କହୁଥାଏ - ହଉ ଗାଡ଼ି ଯାଇ ଟିଟିଲାଗଡ଼ରେ ପହଞ୍ଚୁ, ଦେଖିବା ଗୋଟେ କ'ଣ କରିବା । ଟିଟିଲାଗଡ଼ରେ ଗାଡ଼ି ପହଞ୍ଚିବା ବେଳକୁ ଦିନ ରତ ରତ । ଘରକୁ ଫେରିଯିବାର ନିଶାରେ ସମସ୍ତେ ଭୁଲି ଯାଇଥିଲେ ଭୋକ । ତେଣୁ ଟ୍ରେନରୁ ଓହ୍ଲାଇ ସମସ୍ତେ ଧାଇଁଲେ ବସ୍‌ଷ୍ଟାଣ୍ଡକୁ । ଗୋଟିଏ ବସ୍ ଚାଲିଗଲା ବିନା ପଇସାରେ ଉଠାଇବ ନାହିଁ ବୋଲି । ଆଉ ଗୋଟିଏ ବସ୍‌ବାଲାକୁ ବହୁ ନେହୁରା ବାହୁରା ହୋଇ କହିବାରୁ ସେ ଫୋପାଡ଼ିଲା ଭଳି କହିଲା- ହଉ ଯାଇ ବସ ସବା ପଛ ସିଟ୍‌ରେ ।

ଖଡ଼ିଆଳରେ ପହଞ୍ଚିବା ବେଳକୁ ରାତି ଦଶ । ବସ୍‌ଷ୍ଟାଣ୍ଡ ଶୁନ୍‌ଶାନ୍ । ଦୋକାନ ବଜାର ବି ବନ୍ଦ । କେବଳ ଖୋଲା ଥିଲା ଗୋଟେ ହୋଟେଲ । ସିନାପାଲି ଯିବାକୁ କୌଣସି ଗାଡ଼ିମଟର ନ ଥିଲା । ସିନାପାଲିରୁ ତାଙ୍କ ଗାଆଁ ଆହୁରି ତିନିକୋଶ ଦୂର । ତେଣୁ ଏ ରାତିରେ ଆଉ କୁଆଡ଼େ ଯାଇପାରିବାର ସମ୍ଭାବନା ନ ଥିଲା ।

ଘରକୁ ନ ଫେରିପାରିବା କଥା ଚିନ୍ତା କଲାକ୍ଷଣି ମାଡ଼ିପଡ଼ିଲା ଭୋକର ଦାଉ । ସେମାନେ ସମସ୍ତେ ପାଣି ମୁନ୍ଦେ ମୁନ୍ଦେ ପିଇ ଏଯାଏଁ ଧପାଲି ଆସିଛନ୍ତି । ଭୋକରେ କାହାରି ପାଦ ତ ଉଠୁନି, ପାଟିରୁ ବି ଆଉ କାହାର କଥା ବାହାରୁନି, କେବଳ ଯାହା ଘରକୁ ଫେରିଯିବାର ନିଶା ସମସ୍ତଙ୍କୁ ବୋହି ଆଣିଥିଲା ଏତେ ଦୂର ।

ଗୋଟିଏ ଉଠା ଚା'ଦୋକାନ ଆଗରେ ପଡ଼ିଥିବା କାଠପଟାର ବେଞ୍ଚ ଉପରେ ନିଜର ବୁଜୁଳା ଥୋଇ ଲଥଲାଥ ସମସ୍ତେ ବସିପଡ଼ିଲେ ତଳେ । ଝିଅଟା ଆଉ ଭୋକ ସମ୍ଭାଳି ନ ପାରି କହିଲା - ବାଆ, ଦେଖ ଗୋଟେ ହୋଟେଲ ଖୋଲାଅଛି । ଦେଖ୍ ତ ମୁଠେ ଭାତ ଦେବେ କି । ମୁଁ ତ ଆଉ ସମ୍ଭାଳି ପାରୁନି ଏ ଭୋକକୁ । ଜୀବନ ଚାଲିଗଲା ଭଳି ଲାଗୁଛି ।

ତା' ମାଆ ବି ତା' କଥାରେ ସମ୍ମତି ଜଣାଇ କହିଲା - ହଁ, ଏତେବେଳ ଯାଏଁ ଯେଉଁ ଭୋକକୁ ସମ୍ଭାଳି ଥିଲି, ସେ ଆଉ ସମ୍ଭଳା ହେଲା ପରି ଲାଗୁନି । ପେଟ ଭିତରୁ ହୁବୁକା ଉଠିଲାଣି । ଏ ବୁଜୁଳା ଭିତରେ ଯାହା ଅଛି, ଦେଇକରି ଦେଖ ତ କିଏ ମୁଠେ ଭାତ ଦେବେ କି । ଜୀବନ ଥିଲେ ସିନା ଏ ଜିନିଷରେ ଲୋଭ । ଜୀବନ ତ ଆଉ ରହିଲା ଭଳି ଲାଗୁନି ।

ଦୁଲା କ'ଣ କରିବ - କ'ଣ କରିବ ଭାବି ଦୋ-ଦୋ ପାଞ୍ଚ ହେଉଥିଲା ବେଳେ ଦୁଇଜଣ ମଦୁଆ ଆସି ପହଞ୍ଚିଗଲେ ସେମାନଙ୍କ ପାଖରେ । ନିଶାରେ ପୂରା ଚୂର୍ । ଏମାନଙ୍କୁ ଦେଖି ପଚାରିଲେ - କ'ଣ କରୁଛ ଏଠି ? କ'ଣ ଚୋରିଚାରି କରିବାକୁ ଲୁଚିଛ କି ଏଠି ?

ଦୁଲା ଡରିଯାଇ କହିଲା - ଗାଆଁକୁ ଯିବାର୍ ଥିଲା କିନ୍ତୁ ବସ୍ ମିଳିଲାନି ।

ଗାଆଁ - କେଉଁଠି ତମ ଗାଆଁ ?

ଟିକ୍ରାପଦର - ସିନାପାଲି ପାଖରେ ।

କେଉଁଠୁ ଆଇଲ ତମେମାନେ ?

କାମ ଖୋଜିବାକୁ କରିମନଗର ଯାଇଥିଲୁ ହେଲେ କାମ ପାଇଲୁନି, ଫେରି ଆସିଲୁ ।

କ'ଣ ସଭେଁ ଯାଇଥିଲ ?

ହଇ ଆଜ୍ଞା ।

ଏତେ ସୁନ୍ଦର ସୁନ୍ଦର ଜିନିଷ ନେଇ ଯାଇଥିଲ ତଥାପି ତମକୁ କାମ ମିଳିଲାନି ?

ମିଳିଥାଆନ୍ତା କି କ'ଣ କିଏ ଜାଣେ - ହେଲେ ଆମେ ଯାହାର ଠିକଣା ନେଇ ଯାଇଥିଲୁ ତାକୁ ଭେଟିପାରିଲୁ ନାହିଁ ।

ତା'ହେଲେ ତ ବଡ଼ କଷ୍ଟରେ ଫେରିଥିବ ?

କଷ୍ଟ କଥା କ'ଣ ଆଉ କହିବୁ ବାବୁ - ତିନିଦିନ ହେଲାଣି କାଷ୍ଠା ଉପାସ । କେବଳ ପାଣି ପିଇ ପିଇ ଜୀବନ ବଞ୍ଚାଇ ଫେରିଆସିଛୁ ।

ଓହୋଃ - ତା'ହେଲେ ତମେ ସଭେଁ ଭୋକରେ ଅଛ ? ଆରେ ଜଗା— ଜଗବନ୍ଧୁ, ଦେଖ ତ ଯାଇ ଏମାନଙ୍କ ପାଇଁ କିଛି ଖାଇବାର ବ୍ୟବସ୍ଥା ହୋଇପାରିବ କି ନାହିଁ ।

ଖାଇବା ବ୍ୟବସ୍ଥା ହୋଇପାରିବ ନାହିଁ, ଇଏ ଗୋଟେ କଥା ଗୁରୁ ! ସର୍ଦ୍ଦାର ହୋଟେଲ ପରା ଖୋଲା ଅଛି ।

ହେଲେ ଆମ ପାଖରେ ପଇସାଟିଏ ନାହିଁ ବାବୁ!

ତମ ପାଖରେ ପଇସା ନାହିଁ ତ - ନ ଥାଉ । ହେଲେ ଅସଲ ମାଲ ତ ଅଛି । ଆମେ ତମକୁ ଖାଇବାକୁ ଦେଇ ତମର ଭୋକ ମେଣ୍ଟାଇବୁ । ତମେ କେବଳ ତମର ମାଲକୁ ଆମକୁ ଟିକେ ଚଖାଇବ । ମାତ୍ର ଘଣ୍ଟେ ପାଇଁ ଚାଖିବୁ ।

ଦୁଲା ବୁଝିପାରୁଥିଲା ସେମାନଙ୍କର ଉଦ୍ଦେଶ୍ୟ । ହେଲେ ଭୋକର ତାଡ଼ନା ଏତେ ତୀବ୍ର ଥିଲା ଯେ ସେ ପ୍ରତିବାଦ କରିବାର ସ୍ୱର ପାଉ ନ ଥିଲା । କେବଳ ଚାହିଁଲା ତା'ସ୍ତ୍ରୀ ଆଡ଼େ ।

ଆରେ ଜଗା, ଯାଅ ମୋ ନାଆଁ କହି ସର୍ଦ୍ଦାର ହୋଟେଲରୁ ଭାତ, ଡାଲି ଓ କୁକୁଡ଼ାମାଂସ ଧରିଆ । କହିବୁ ଜଲ୍‌ଦି ଦେବ । ଏମାନେ ବହୁତ ଭୋକିଲା । ମୋତେ ବି ଜୋର୍ ଭୋକ ଲାଗିଲାଣିରେ ।

ମୁଁ ହୋଇ ଗଲି - ହେଇ ଅଇଲି ଗୁରୁ । ତମେ କେବଳ ସେମାନଙ୍କୁ ନିଘା ରଖିଥାଅ ।

କିଛି ସମୟ ପରେ ଆସି ପହଞ୍ଚିଗଲା ଜଗା । ହାତରେ ତା'ର ଭାତ, ଡାଲି ଓ କୁକୁଡ଼ାମାଂସ ତରକାରି । ଭୋକ ସମୟରେ ସେସବୁ ଦେଖି ଆଉ ସମ୍ଭଳା ପଡ଼ିଲେନି ସେମାନେ । ଝପଟିପଡ଼ି ଗିଳି ପକାଇବାକୁ ଇଚ୍ଛା କଲେ । ମାଡ଼ି ଆସିଲେ ତିନିହେଁ ଖାଦ୍ୟ ପାଖକୁ ।

ହଁ ହଁ ସବୁର କର, ସବୁର କର, ଆମ କଥାର ଜବାବ୍ ଦେଇନ ଯେ ଏଯାଏଁ । ଆରେ ରାଜି ହୋଇଗଲେ ଟଙ୍କା ଦି'ଶହ ବି ଦେବୁ ଘରେ ପହଞ୍ଚି ଖିଆପିଆ କରିବ ।

ଦୁଲା ଚାହିଁଲା ତା ସ୍ତ୍ରୀ ଆଡ଼େ, ତା' ମନୋଭାବ କ'ଣ ଜାଣିବାପାଇଁ । ତା'ସ୍ତ୍ରୀ ବି ତା' ମନୋଭାବକୁ ଠିକ୍ କରି ବୁଝିନେଇ କହିଲା ଆଗ ଜୀବନ ବଞ୍ଚୁ । ମାନ କଥା ପଛରେ ।

ବାସ୍ - ଏତିକି କଥାରେ ଫିଟିଗଲା ଖାଦ୍ୟ ପୁଡ଼ିଆ । ମହକିଗଲା ବାସ୍ନା । ଆଜନ୍ମ ବୁଭୁକ୍ଷୁ ପରି ତିନିହେଁ ଖାଇଲେ ବି ଭୋକ ନ ମେଣ୍ଟିବା ପରି ଲାଗୁଥିଲା । ସେମାନେ କହୁଥିଲେ ଆଉ ଆଉ । ଗୋଟିଏ ପରେ ଗୋଟିଏ ପୁଡ଼ିଆ ଖୋଲି ବଢ଼ାଇ ଦେଉଥିଲେ ଏମାନେ । ଖାଇସାରି ପ୍ରକୃତିସ୍ଥ ହେଲା ବେଳକୁ ଦୁଲାର ସ୍ତ୍ରୀ ବି କହିଲା- ତିନିଦିନ ହେଲା ପେଟରେ ଠୋସ୍ କିଛି ପଶି ନ ଥିଲା, ଏବେ ଖାଇସାରିବା ପରେ ଦିହରେ ବଳ ପଶିବ କ'ଣ ଦେହ ହାତ ତ ବସି ବସି ଯାଉଛି ।

ଖାଇବା ପର୍ବ ସରିବା ପରେ ଦୁଲା ଜାଣୁଥିଲା ଏହା ପରର ପରିଣତି । ଏକେ ତ ଦେହ ଅସାଢ଼ ଲାଗୁଥିଲା, ଇଚ୍ଛା ହେଉଥିଲା ଯେଉଁଠି ନାହିଁ ସେଇଠି ଶୋଇ ପଡ଼ିବାକୁ । ତେଣୁ ସେ ପରିସ୍ଥିତି ସାମ୍ନା ନ କରିବାକୁ ବୁଜୁଳିଟିଏ ମୁଣ୍ଡତଳେ ଦେଇ ମାଟି ଉପରେ ଶୋଇଗଲା ସିଏ । ସେ ଶୋଇବାକୁ ଉପକ୍ରମ କରୁଛି କି ନାହିଁ ତା ସ୍ତ୍ରୀ ତାକୁ ହଲାଇଦେଇ କହିଲା - ଏମାନେ ଠିଆ ହୋଇ ରହିଛନ୍ତି ପରା !

ହଉ ତୁ ବି ଆଖିବୁଜି ଏଇଠି ଗଡ଼ିପଡ଼ ଟିକିଏ, ସେମାନେ କ'ଣ କରୁଛନ୍ତି କରନ୍ତୁ ।

ଝିଅ ଆଡ଼େ ଚାହିଁ କଇରୀ କହିଲା—ଯାଆ ମାଆ, ଯୁଧିଷ୍ଠି ପଶାପାଲିର ବାଜିଲଗାଇଥିଲେ ଦ୍ରୌପଦୀକି ଆଉ ଆଜି ଆମେ ପେଟ ପାଇଁ ବାଜି ଲଗାଇଛୁ ତତେ, ଧର୍ମ ଅଧର୍ମ ଭଗବାନ୍ ବୁଝିବ ।

ହେ ବାବୁମାନେ - ମୋର ଏ କଅଁଳା ପିଲାଟେ, ମାସ ଛଅଟା ବି ହୋଇନି ତା'ର ପହିଲି ଗାଧୁଆ । ତିନିଦିନ ହେଲା ଉପାସରେ ଥିଲା । ଏବେ ଖାଇବା ପରେ ଦିହମୁଣ୍ଡ ଆମର ଯାହା ହେଉଛି ତା'ର ବି ହେଉଥିବ । ଟିକେ ଦେଖିଚାହିଁ ହେପାଜତରେ...

ଖାଇସାରିଥିବା ହେତୁ ଝିଅଟା ବସିବା ସ୍ଥାନରୁ ଉଠି ଚାଲିବାର ଅବସ୍ଥାରେ ନ ଥିଲା । ହେଲେ ଆଉ ବିଳମ୍ବପାଇଁ ସେମାନଙ୍କର ଧୈର୍ଯ୍ୟ ନ ଥିଲା । ତେଣୁ ତାକୁ ଏକରକମ ଟେକି ନେଇଗଲେ ବସ୍‌ଷ୍ଟାଣ୍ଡ କଡ଼ରେ ଥିବା ଗୋଟେ ଅଧାତିଆରି ଘର ଭିତରକୁ ।

ଝିଅର ଚାଲିଯାଉଥିବା ଦୃଶ୍ୟକୁ ଚାହିଁ ମାଆ ହାତଯୋଡ଼ିଲା ମାଆ ଦୁଆରସୁଣୀଙ୍କୁ ଡାକି ।

ଘଣ୍ଟେ ଗଲା । ଦୁଇଘଣ୍ଟା ଗଲା । ହେଲେ ଫେରୁ ନ ଥିଲା ଝିଅ । ମାଆ ମନ ହାଇଁପି ସାଇଁପି ହେଉଥାଏ । ଦୁଲା ବାହାନା କରି ଆଖିବୁଜି ପଡ଼ିଥିଲା ସିନା ହେଲେ ଜମା ନିଦ ନ ଥିଲା ତା ଆଖିରେ । ଅପେକ୍ଷା କରି କରି କୁଆଁତାରା ଉଠିଲା । ଆଉ ସମ୍ଭଳା ପଡ଼ିଲାନି ମାଆ ମନ । ଦୁଲାକୁ ହଲାଇ ହଲାଇ କହିଲା - ଯାଅ ଦେଖ ତ ସେ ରାକ୍ଷସମାନେ କୁଆଡ଼େ ନେଲେ ତାକୁ ।

ଏମିତି ଏକ ସମୟରେ କ'ଣ କରାଯାଇପାରେ ଭାବିପାରୁ ନ ଥିଲା ଦୁଲା । ସେ କେବଳ ଶୋଇରହି ମିଟିମିଟି କରି ଚାହିଁଲା କଇରୀ ଆଡ଼େ ।

ଚାହିଁଛ କ'ଣ - ରାତି ଆସି ପାହିବାକୁ ବସିଲାଣି । ସେ ରାକ୍ଷସଗୁଡ଼ାଙ୍କର ଭୋକ ମେଣ୍ଟୁ ନାହିଁନା କ'ଣ ?

ଦୁଲା ଉଠିଲା । ଉଠି ଚାଲିଲା ସେହି ଅଧାଟିଆରି ଘର ଆଡ଼େ । ଡାକି ଡାକି ଯାଉଥାଏ - ଏ ନନୀ, ନନୀ, ନନୀଲୋ କୁଆଡୁ କିଛି ଆସୁ ନ ଥାଏ, ଜବାବ । ଶବ୍ଦ କିଛି ଶୁଭୁ ନ ଥାଏ, ପଶିଲା ସେ ଘର ଭିତରକୁ । ଜହ୍ନ ଆଲୁଅରେ ଦେଖିଲା । ମୁହଁ ମାଡ଼ି ପଡ଼ିଛି ନନୀ । ଉଭା ଲଙ୍ଗଳା । ପାଖରେ ପଡ଼ିଥିଲା ତା'ର ଶାଢ଼ି, ସାୟା ଓ ବ୍ଲାଉଜ୍ । ପ୍ରଥମେ ଲୁଗାପକାଇ ତାକୁ ଢାଙ୍କି ଦେଲା ସିଏ । ତା' ପରେ ହଲାଇ ହଲାଇ ଡାକିଲା - ଏ ନନୀ, ନନୀ ... ଏ ନନୀ, ଉଠ, ଉଠ୍ ନନୀ, ରାତି ପରା ପାହିବାକୁ ବସିଲାଣି । ନନୀ ଥିଲା ନୀରବ । ତାକୁ ଓଲଟାଇ ଦେଇ ତା' ମୁହଁକୁ ହଲାଇ ନେଇ ପୁଣି ଥରେ ତୁହାଇ ତୁହାଇ ଡାକିଲା - ଏ ନନୀ ଶୁଣ, ଏ ମାଆ ଶୁଣ, ଏ ନନୀ - ଉଠ, ନନୀ - ଉଠ୍, ଉଠ୍ ।

ହେଲେ ନନୀ ଶୁଣୁ ନ ଥିଲା କି ଉଠୁ ନ ଥିଲା । ଜହ୍ନ ଉପରେ ମାଡ଼ି ଆସୁଥିଲା ଖଣ୍ଡେ କଳା ବାଦଲ । ଛାଇ ଆଲୁଅରେ ଦୁଲା ନନୀକୁ ହଲାଇ ହଲାଇ କେବଳ ଡାକ ଛାଡ଼ି ଚାଲିଥିଲା - ଏ ନନୀ, ଉଠ୍, ନନୀ ଉଠ୍, ଉଠ୍ ଏ ମାଆ ଉଠ୍, ଉଠ୍ ମାଆ ।

# ଦୂର ନକ୍ଷତ୍ର

ମୋର ଏମ୍. ଏ. ପରୀକ୍ଷା ଚାଲିଥିବାରୁ ମୁଁ ସୌମେନ୍ଦ୍ରଭାଇର ବାହାଘରକୁ ଯାଇପାରିଲି ନାହିଁ । ବୋଉ ଚିଠି ଦେଇଥିଲା— ବନମାଉସୀ ଭାରି ବାଧ କରି ଖବର ପଠାଇଛି, ତୁ ଯେମିତି ହେଲେ ସୋମର ବାହାଘରକୁ ଆସିବାପାଇଁ । ହେଲେ ମୁଁ ତାକୁ କହିଦେଇଛି ତୋର ପରୀକ୍ଷା ଚାଲିଛି ବୋଲି । ତଥାପି ମୁଁ ତାକୁ ଚିଠି ଦେଇଛି ଯଦି ପରୀକ୍ଷା ସରିଯାଇଥାଏ ବାହାଘରକୁ ଆସି ପହଞ୍ଚିବ । ତୋର କ'ଣ ମାର୍ଚ୍ଚ ୨୨ ବେଳକୁ ପରୀକ୍ଷା ସରିଯାଇଥିବ ? ଯଦି ନ ସରିଥିବ ତୁ ମୋଟେ ଆସିବା କଥା ନାଁ ଧରିବୁ ନାହିଁ । ତୋ ବାପା କେମିତିକା ଲୋକ ତ ତୁ ଜାଣୁ । ତୋତେ କିଛି କହିବେନି, ହେଲେ ସବୁ ରାଗ ମୋ ଉପରେ ଶୁଝାଇବେ ।

ପରୀକ୍ଷା ସରି ନ ଥିଲା । ତେଣୁ ସୌମେନ୍ଦ୍ରଭାଇର ବାହାଘରକୁ ଯାଇପାରିଲି ନାହିଁ। ମନଟା ଖାଲି ମୋର କଲବଲ ହେଉଥାଏ । ଯଦିଓ ସୌମେନ୍ଦ୍ରଭାଇ ମୋର ଦୁଇଟା କ୍ଲାସ ଉପରେ ପଢୁଥିଲା, ତଥାପି ଆମେ ଦୁହେଁ ଥିଲୁ ଅତି ଘନିଷ୍ଠ ସାଙ୍ଗ । ତା' ବାହାଘରକୁ ମୁଁ ଯାଇପାରିବି ନାହିଁ ଏକଥା କେବେ ଭାବି ନ ଥିଲି ।

ପରୀକ୍ଷା ପରେ ଘରେ ପହଞ୍ଚି ବୋଉକୁ ଆଗ ପଚାରିଲି ସୌମେନ୍ଦ୍ରଭାଇର ବାହାଘର କଥା । କେମିତି ହେଲା । କ'ଣ ସବୁ ଦେଲେ, ଭାଉଜ କେମିତି ଇତ୍ୟାଦି ଇତ୍ୟାଦି ।

ବୋଉ କହିଲା- ବାହାଘର ତ ଖୁବ୍ ଭଲରେ ଭଲରେ ହେଲା । ତୋ' ବନମାଉସୀ ତ ନିମକାଠିଟିଏ ବି ସେ ଝିଅଘରୁ ଆଣିଲା ନାହିଁ । ହେଲେ କ'ଣ ହେବ ?

— ହେଲେ କ'ଣ ହେବ - ମାନେ !

— ଅସଲ ସୁଖକୁ ତ ମନ ଜଳିଯାଉଛି— ସେ ବାହାଘରରେ ଆଉ ରହିଲା କ'ଣ ?

— ମୁଁ ତୋ କଥା ଜମା କିଛି ବୁଝିପାରୁନି ।

— କ'ଣ ଆଉ ତୋତେ ବୁଝାଇବି । ବାହାଘର ପରଠାରୁ ତ ସୋମ ସେ ଝିଅଟା ମୁହଁକୁ ଜମା ଚାହୁଁନି । ସୋମ ଭଳିଆ ସୁଧାର ପିଲା ପେଟରେ ଏତେ କଥା ଥିଲା ? ହେଲା ଯଦି ଥିଲା ସେତେବେଳେ ଭଲା ଫିଟାଇ କହିଥାନ୍ତା । ଭୟରେ ହେଉ କିମ୍ବା ଭକ୍ତିରେ ହେଉ ସେତେବେଳେ ଯଦି ନ କହିଲୁ ତେବେ ଏବେ କହ ।

ନିଦା ପଥର ପରି କିଛି କହୁନି । ମୁଁ ତ ଭାବୁଛି ତାକୁ କିଏ ଓଷଦ ଫୋଷଦ କରିଛି । ନ ହେଲେ ତା' ଭଳିଆ ପିଲା ଏମିତି ମୂକ ପାଲଟି ଯାଆନ୍ତା କିପରି ? ସମସ୍ତେ ତ ବୁଝାଇ ବୁଝାଇ ଥକି ସାରିଲେଣି । ତୋ ମାଉସୀ ତ ତୋତେ ଅନାଇ ବସିଛି । ତୁ ଆସିଲେ କଥାଟା କ'ଣ ବୁଝିବୁ ବୋଲି ।

ମନର ବ୍ୟଗ୍ରତା ଓ ଅନେକ କଥା ଚିନ୍ତା ଭିତରେ ମୁଁ ଖାଲି ଭାବୁଥାଏ ରାତି କିପରି ପାହିଲେ ମାଉସୀଘରକୁ ଯିବି । ପରଦିନ ମାଉସୀଘରେ ପହଞ୍ଚିଲି । ସଦ୍ୟସମାପ୍ତ ବାହାଘରର କଳକାକଳି ନ ଥିଲା । ବରଂ ଥିଲା ଏକ ମୌନ ନୀରବତା । ମୁଁ ମଉସାଙ୍କୁ ନମସ୍କାର କଲାବେଳେ ସେ କେବଳ ପଚାରିଲେ — ପରୀକ୍ଷା ସରିଲା ? କେମିତି ହୋଇଛି ? ମାଉସୀଙ୍କୁ ନମସ୍କାର କଲାବେଳେ ସେ କହିଲେ — ତୋତେ ତ ଅନାଇ ଅନାଇ ଆଖିରୁ ପାଣି ମଲାଣି । ସେଠି ତ ପରୀକ୍ଷା ଦେଇ ଆସିଲୁ ଦେଖ ଏ ପରୀକ୍ଷାରେ କ'ଣ କରୁଛୁ ।

— କ'ଣ ହୋଇଛି ମାଉସୀ ?

— ତୁ କ'ଣ ତୋ ବୋଉଠାରୁ କିଛି ଶୁଣିନୁ ?

— ଶୁଣିଛି ଯେ । ହେଲେ କଥାଟାକୁ ମୁଁ ଏତେ ଗୁରୁତ୍ୱ ଦେଇନି । ଭାବିଲି କ'ଣ ଟିକିଏ ଓଲମ୍ ବିଲମ ହୋଇଥିବା ଯୋଗୁଁ ସୋମଭାଇ ହୁଏତ ନୀରବ ପ୍ରତିଶୋଧ ନେବାର ଏ ବ୍ୟବସ୍ଥା କରିଛି । ମାତ୍ର କେତେଦିନ ଆଣ୍ଟ ରଖିବ । ହାତ ଧରି ବାହାହୋଇଛି, ଦିନାକେତେ ଗଲେ ବଳେ ବାଟକୁ ଆସିଯିବ ବୋଲି !

— ତୋ' ତୁଣ୍ଡ ସୁତୁଣ୍ଡ ହେଉ— ସେ ବାଟକୁ ଚାଲିଆସୁ ।

— ଆଚ୍ଛା, ସୋମଭାଇର ଦେଖା ନାହିଁ, କୁଆଡ଼େ ଯାଇଛି ? —ଫେରିବ କେତେବେଳେ ?

— କଲେଜକୁ । —ତା'ର କ'ଣ ଠିକ୍ ଠିକଣା ଅଛି । ଏବେ ତ କଲେଜଟା ତା' ଘର ଓ ଘରଟା ତା'ର ହୋଟେଲ । ଆହୁରି ଯଦି କଲେଜରୁ ଦରମା ମିଳୁଥାଆନ୍ତା ତେବେ ବୋଧେ ଏ ହୋଟେଲକୁ ସେ ଆସୁ ନ ଥାନ୍ତା ।

— ଭାଉଜ ?

— ସେ ଘରେ ଅଛି । କୁଆଡ଼େ ଯିବ ବିଚାରୀ । ଏତକ କହିସାରି ମାଉସୀ ଡାକିଲେ— ଲୋ, କନକ ! ବିଜୁଭାଇକୁ ନେଇ ତୋ ଭାଉଜଙ୍କୁ ଟିକେ ଚିହ୍ନାଇଦେ ।

କନକ ମୋତେ ଭାଉଜଙ୍କ ପାଖରେ ପହଞ୍ଚାଇ ଦେଇ କହିଲା— ଭାଉଜ, ଏ ହେଉଛନ୍ତି ବିଜୁଭାଇ, ଆମ ସୁରମାମାଉସୀଙ୍କ ପୁଅ ଓ ତୁମର ଏକମାତ୍ର ଦିଅର ।

ମୁଁ ନମସ୍କାର କଲି । ସେ ମୃଦୁହସି ପ୍ରତିନମସ୍କାରଟିଏ ହୋଇ ମୋତେ ବସିବାକୁ କହିଲେ । ମୁଁ ବସିବାପରେ ସେ କନକକୁ କହିଲେ— ଟିକେ ଫ୍ୟାନ୍ ସୁଇଚ୍‌ଟା ଅନ୍ କରିଦିଅ ତ, ବହୁତ ଗରମ ଲାଗୁଥିବ ବିଜୁବାବୁଙ୍କୁ ।

ମୁଁ କହିଲି ତୁମେ ଠିଆହୋଇ ରହିଲ ଯେ— ବସ ।

ସେ ପଲଙ୍କ ବାଡ଼କୁ ଆଉଜି ବସିଲେ ।

ମୁଁ ଭାବୁଥାଏ କି କଥାବାର୍ତ୍ତା ଆରମ୍ଭ କରିବି । ହଷ୍ଟେଲରେ ଥିବା ବେଳେ ଭାବୁଥିଲି ବାହାଘରକୁ ନ ଯାଇପାରିଲି ନାହିଁ, ପରୀକ୍ଷାପରେ ମାଉସୀ ଘରକୁ ଗଲେ ବହୁତ ମଜା କରିବି ଭାଉଜଙ୍କ ସାଥୀରେ । ହେଲେ ଏବେ ତାଙ୍କର ମନ ପୋଡ଼ି ଯାଉଥିବାବେଳେ କି ମଜା କରିବି ତାଙ୍କ ସହ । କି କଥାବାର୍ତ୍ତା କରିବି । ନୀରବତାରେ କିଛିକ୍ଷଣ ବିତିବାପରେ ସେ ତାଙ୍କଆଡୁ କଥା ଆରମ୍ଭ କରି ପଚାରିଲେ— ତମର ପରୀକ୍ଷା କେମିତି ହେଲା ?

— ଭଲ ।

— ଖାଲି ଭଲ କହିଲେ ଚଳିବ ? ମଉସା ମାଉସୀ କେତେ ବ୍ୟସ୍ତ ତୁମର ପରୀକ୍ଷାପାଇଁ । ଆଉ ତୁମେ ଚାଲୁ ଚାଲୁ ଭଲଟିଏ କହିଦେଉଛ ।

— ନା, ଖୁବ୍ ଭଲ ହୋଇଛି ।

— ଏ ହୋଇନା ବାତ୍ ।

ସେ ପୁଣି କନକକୁ ପଚାରିଲେ— ଆଚ୍ଛା ବିଜୁବାବୁଙ୍କୁ କିଛି ଜଳଖିଆ ଦେଇଛ କି ନାହିଁ ?

— ନା, ସିଏତ ଆସି ପହଞ୍ଚି ବୋଉ ସାଙ୍ଗରେ କ'ଣ ପଦେ ଦି' ପଦ କଥା ହୋଇଛନ୍ତି କି ନାହିଁ ତମ ପାଖକୁ ଚାଲିଆସିଲେ । ଚା' ଜଳଖିଆ ଆଉ କେତେ ବେଳେ ଖାଇଲେ ?

— ନା, ନା ମୋର ଏବେ ଜଳଖିଆ ଖାଇବାର ନାହିଁ । ରୋଷେଇ ସରିଲେ ଏକାବେଳେ ଖାଇବି ।

ତା'ହେଲେ ଟିକେ ସରବତ୍ ହେଉ । କନକ, ମୋ ସୁନାଭଉଣୀଟା ପରା ! ଯାଆ ତ ସରବତ୍ ଗ୍ଲାସ୍‌ଟେ କରି ଆଣିବ ।

କନକ ଚାଲିଗଲାପରେ କିଛି ସମୟ ନୀରବତାରେ କଟିଲା । ସେହି ଅଳ୍ପ ସମୟ ନୀରବତା ଲାଗୁଥିଲା ଖୁବ୍ ଦୀର୍ଘ ଓ ଓଜନିଆ । ମୁଁ ନୀରବତା ଭଙ୍ଗକରି ପ୍ରଶ୍ନ କଲି—ମୁଁ ଯାହା ଶୁଣୁଛି ... ?

— କ'ଣ ଶୁଣୁଛ ?

— ସୋମୁଭାଇର କଥା ।

— ତମେ କ'ଣ ଶୁଣିଛ, ମୁଁ ଜାଣି ନାହିଁ । ମାତ୍ର ମୋ ଜାଣିବାରେ ତ ସେ ସେମିତି କିଛି ଭୁଲ୍ କରୁ ନାହାନ୍ତି ।

— ମାନେ !

— ଏଠି ସମସ୍ତେ ଆମର ଦୈହିକ ସମ୍ପର୍କଟିଏ ସୃଷ୍ଟି ହୋଇପାରିନି ବୋଲି ଏତେ ଚିନ୍ତିତ । ମାତ୍ର ସେଇଟା ହୋଇ ଯଦି ମାନସିକ ସମ୍ପର୍କଟିଏ ସୃଷ୍ଟି ହୋଇପାରି ନ ଥାଆନ୍ତା । ଏବେ ଆମେ ଗୋଟିଏ କୋଠରିରେ— ଦେହର ସମ୍ପର୍କ ନାହିଁ କିମ୍ବା ଦେହାତୀତର ସମ୍ପର୍କ ନାହିଁ, ତେଣୁ କିଛିଟା ଶାନ୍ତିରେ ଅଛୁ ।

— ସୋମୁଭାଇ ମୋ ସହ ବହୁତ ଫ୍ରି । ତା'ର କୌଣସି ପ୍ରେମ ସମ୍ପର୍କ ଥିଲେ ମୁଁ ନିଶ୍ଚୟ ଜାଣିଥାଆନ୍ତି । ତୁମକୁ ସେ ବିଷୟରେ କିଛି କହିଛି କି ?

— ତାଙ୍କର କୌଣସି ପ୍ରେମ ସମ୍ପର୍କ ନାହିଁ ବୋଲି ସେ ଈଶ୍ୱର ନାମରେ ଶପଥ କରି କହିଛନ୍ତି ଏବଂ ମୋତେ ଅନୁରୋଧ କରିଛନ୍ତି ସେ ନେଇ ତାଙ୍କୁ ଭୁଲ ନ ବୁଝିବାକୁ ।

— ତେବେ କ'ଣ ତା'ର କୌଣସି ଶାରୀରିକ ଅକ୍ଷମତା ଅଛି କି ଯେଉଁଥିପାଇଁ ସେ ଭୟ କରୁଛି ?

— ସେ କଥାକୁ ପରୀକ୍ଷା କରିବାର ଅବକାଶ ମିଳିନି । ତଥାପି ତାଙ୍କର ଶାରୀରିକ ଗଠନ ସାରାରାତି କାମନାସିକ୍ତ ଅସ୍ଥିର ଭାବକୁ ଦେଖିଲେ ଏବଂ ନିଜକୁ ଯନ୍ତ୍ରଣା ଦେଇ ନିଜ ଭିତରର ଯୌନ ଉଦ୍‌ବେଳନକୁ ରୋକିବାର ପ୍ରୟାସକୁ ଦେଖି ମୁଁ ଭାବୁଛି ସେ ସମର୍ଥ ଓ ସକ୍ଷମ ପୁରୁଷ ।

— ନିଜକୁ ଯନ୍ତ୍ରଣା ଦେଇ ମାନେ ?

ସେ ଉଠିଯାଇ ଏକ ଧଳା କପଡ଼ା, ଗୋଟିଏ ସ୍ପିରିଟ୍ ବୋତଲ ଓ ଇଞ୍ଜେକ୍‌ସନ୍ ଛୁଞ୍ଚିକୁ ବାହାର କରି ଆଣି ମୋ ଆଗରେ ଧରିଲେ ।

— ଇଏ କ'ଣ ?

— ଏ କପଡ଼ା ରକ୍ତ ଦାଗକୁ ଦେଖୁଛ ? ଏସବୁ ରକ୍ତ ତୁମ ଭାଇଙ୍କର । ଶୋଇଥିବେ ଶୋଇଥିବେ ହଠାତ୍ ଉଠିପଡ଼ି ଆଙ୍ଗୁଠି ଟିପକୁ ଏ ଛୁଞ୍ଚିରେ ଫୋଡ଼ିବେ । ରକ୍ତ ବାହାରିବ । ପରେ ଏ କପଡ଼ାରେ ପୋଛି ସ୍ପିରିଟ୍ ଦେଇ ପୁଣି ଶୋଇପଡ଼ିବେ ।

— ତୁମେ ଏ ସବୁ ଦେଖି କିଛି କୁହନି ?

— ଏ ପର୍ଯ୍ୟନ୍ତ ତାଙ୍କୁ ଛୁଇଁବାର ଅଧିକାର ମୋତେ ଦେଇ ନାହାନ୍ତି । ତେଣୁ କହିବାର ଅଧିକାର ଆସିଲା କେଉଁଠୁ ? ତା'ପରେ ସେ ଏସବୁ କାମ କଲା ବେଳେ

ଭାବନ୍ତି ମୁଁ ଶୋଇସାରିଛି ବୋଲି । ମାତ୍ର ମୁଁ ଯେ କେଉଁଠି ସାରାରାତି ଶୋଉଛି । ମୁଁ ତ ପ୍ରଥମେ ଭୟ କରିଗଲି ଯେ ସେ ଡ୍ରଗ୍ସ ଆଡ଼ିକ୍ଟ । ତେଣୁ ତାଙ୍କ ଅଜ୍ଞାତସାରରେ ତାଙ୍କ ଆଲମିରା ଖୋଲି ସବୁ ତନ୍ନ ତନ୍ନ କରି ପରୀକ୍ଷା କଲି । ତା' ପରେ ତାଙ୍କର ହାବଭାବକୁ ତୀକ୍ଷ୍ଣ ଭାବେ ଅନୁଧ୍ୟାନ କଲି। ରକ୍ଷା ହୋଇଛି ସେ ଡ୍ରଗ୍ସ ଆଡିକ୍ଟ ନୁହନ୍ତି ।

— ନିଜକୁ ଯନ୍ତ୍ରଣା ଦେଇ ଏମିତି ହେବାର ଉଦ୍ଦେଶ୍ୟ କ'ଣ ?

— କିଏ କହିପାରିବ - ସମୟ ଆସିଲେ ବଳେ ଜଣାପଡ଼ିବ ।

ସେ ସମୟଯାଏଁ ତମେ କ'ଣ ଅପେକ୍ଷା କରିଥିବ ?

ଆଉ ଚାରା କ'ଣ? ଗୋଟିଏ କଥା ମୋତେ ଚିନ୍ତିତ କରୁଛି କେବଳ।

— କ'ଣ ?

— ଆମ ଉଭୟଙ୍କ ମଧ୍ୟରେ ଥିବା ସମ୍ପର୍କ ଏଇନେ କେବଳ ୟାଙ୍କ ପରିବାରର ଜ୍ଞାତସାରରେ ଅଛି । ଆଉ କିଛି ଦିନ ପରେ ହୁଏତ ଆମ ଘରର ଲୋକମାନେ ଜାଣିବେ, ତା'ପରେ ବାହାର ଲୋକ । ସମସ୍ତେ ଜାଣିସାରିବା ପରେ ମୁଁ ଏମିତି ସଂପର୍କ ପାଇଁ କି କୈଫିୟତ୍ ଦେବି ? ଆତ୍ମସମ୍ମାନ ଭୟରେ ଚୁପ୍ ରହିଲେ ସମସ୍ତଙ୍କ ଅଙ୍ଗୁଳି ମୋ ଚରିତ୍ର ଉପରକୁ ଉଠିବ । ସେତେବେଳେ ମୁଁ କ'ଣ କରିବି ?

— ନା' ଭାଉଜ ! ମୁଁ ଭାବୁଛି କଥା ଏତେ ଦୂର ଯିବ ନାହିଁ । ତା' ପୂର୍ବରୁ ସୋମୁଭାଇର ସଦ୍‌ବୁଦ୍ଧି ଆସିଯାଇଥିବ ।

— ଆସିଗଲେ ତ ଭଲ କଥା । ମୋ ଅପେକ୍ଷାର ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ତାଙ୍କର ଯଦି ସଦ୍‌ବୁଦ୍ଧି ଆସି ପରିବର୍ତ୍ତନ ହୋଇଗଲା ତ ଭଲ, ମାତ୍ର ମୋ ଅପେକ୍ଷା ସରିଗଲା ପରେ ମୁଁ ଯେଉଁ ନିଷ୍ପତ୍ତି ନେବି ତାହା ଅପରିବର୍ତ୍ତିତ ରହିବ ।

— କ'ଣ ନିଷ୍ପତ୍ତି ନେବ ବୋଲି ତୁମେ ଭାବିଛ ?

— ଏବେ ନୁହେଁ । ସେ ସମୟ ଆସିଲେ ଜାଣିବ । ତଥାପି ଏତିକି ଜାଣ ଯେ ମୁଁ ଏପରି କୌଣସି ନିଷ୍ପତ୍ତି ନେବି ନାହିଁ ଯାହା ଏ ପରିବାର, ଆମ ଘର କିମ୍ବା ଏ ପରିବାର ଲୋକଙ୍କର ମର୍ଯ୍ୟାଦାକୁ କ୍ଷୁଣ୍ଣ କରିବ । ସ୍ତ୍ରୀର ମଧ୍ୟ ଆତ୍ମସମ୍ମାନବୋଧ ଅଛି ଯାହା ସ୍ୱାମୀଠାରୁ କୌଣସି ଗୁଣରେ ନ୍ୟୂନ ନୁହେଁ । ମୁଁ ତାହା ପ୍ରମାଣ କରି ଦେବି ।

ଏହି ସମୟରେ କନକ ଆସି କହିଲା—ସୋମୁଭାଇ କଲେଜରୁ ଆସିଲେଣି । ସୋମୁଭାଇର ଆସିବା ଖବର ଶୁଣି ମୁଁ କହିଲି—ଭାଉଜ! ଧୈର୍ଯ୍ୟ ରଖ । ମୁଁ ଆଶା

କରୁଛି ସବୁ ଠିକ୍ ହୋଇଯିବ । ମୁଁ ଟିକିଏ ସୋମୁଭାଇ ସହିତ କଥାବାର୍ତ୍ତା କରି ଆସୁଛି । ମୁଁ ତା'ର ମତି ଗତି କ'ଣ ବୁଝେ ।

ସୋମୁଭାଇ ଡ୍ରଇଂରୁମ୍‌ରେ ବସି ଖବରକାଗଜ ପଢୁଥିଲା । ମୋତେ ଦେଖିଲେ ସେ ପୂର୍ବରୁ ଯେପରି ତତ୍ପରତା ଭାବ ଦେଖାଉଥିଲା ସେମିତି ହେଲା ନାହିଁ । ଅତି ଗମ୍ଭୀର ଭାବେ ପଚାରିଲା— ତୁ କେତେବେଳୁ ଆସିଲୁଣି ?

— ଏଇ ଦୁଇ ଘଣ୍ଟା ଖଣ୍ଡ ହେବ ।

— ତୋର ପରୀକ୍ଷା ଭଲ ହେଲା ତ ?

— ହଁ, ଚଳିବ ।

— ହଁ, ଭଲ ହେଲେ କେତେ ନ ହେଲେ କେତେ । ଭଲ ହେଲେ କେଉଁ ଚାକିରି ଥୁଆହୋଇଛି ଯେ ସାଙ୍ଗେ ସାଙ୍ଗେ ମିଳିଯିବ । ତା'ପରେ ଅଧ୍ୟାପକ ଚାକିରି ଛାଡିଦେଲେ ଏମ୍.ଏ. ଯୋଗ୍ୟତାପାଇଁ ସେମିତି ତ କୌଣସି ନିର୍ଦ୍ଦିଷ୍ଟ ଚାକିରି ନାହିଁ । ଅନ୍ୟ ଚାକିରି ପାଇଁ ଏମ୍.ଏ. ଯାହା ବି.ଏ. ତାହା । ଆଉ ଅଧ୍ୟାପକ ହେଲେ ଆମରି ଭଳିଆ ଦଶା ହେବ ତ ଆଉ କ'ଣ ।

— ଛାଡ଼ ସୋମୁଭାଇ, ପଛକଥା ପଛରେ । ଯେତେବେଳେ ଯାହା ଭାଗ୍ୟରେ ଥିବ ହେବ । ସେଥିପାଇଁ ଆଗରୁ ଏତେ ବ୍ୟସ୍ତ ହୋଇ ଲାଭ କ'ଣ ? ମୁଁ ତୁମକୁ ଗୋଟେ କଥା ପଚାରିବି ବୋଲି ଭାବିଛି ।

— ତୁ ଯାହା ପଚାରିବୁ ମୁଁ ଜାଣେ । ମାତ୍ର ପଚାରି ଲାଭ କ'ଣ - ମୋଠାରୁ ତ କୌଣସି ଉତ୍ତର ପାଇବୁ ନାହିଁ ।

— କୌଣସି କାରଣ ନ ଦର୍ଶାଇ ତମର ଏ କାର୍ଯ୍ୟପାଇଁ ସମଗ୍ର ପରିବାର ବିଶେଷକରି ଭାଉଜ କି ଦଣ୍ଡ ଭୋଗୁଛନ୍ତି ତାକୁ ତମେ କେବେ ଅନୁଭବ କରିଛ ?

— ସବୁ ଜାଣେ । ହେଲେ ମୋ ପାଖରେ କୌଣସି ବିକଳ୍ପପନ୍ଥା ନାହିଁ ।

— ମାନେ !

— ଥରେ ତ କହିଛି ମୁଁ ଏହାର କାରଣ ବିଷୟରେ ତୋତେ କୌଣସି ଉତ୍ତର ଦେଇପାରିବି ନାହିଁ ।

—ତେବେ ଜାଣି ଜାଣି ତମେ ଗୋଟିଏ ଝିଅର ଜୀବନ ନଷ୍ଟ କଲ କାହିଁକି ?

— ମାନୁଛି ସେଇଟା ମୋର ଭୁଲ । ଏବେ ଚେଷ୍ଟାକରି ମଧ୍ୟ ସେ ଭୁଲ୍‌କୁ ସୁଧାରି ପାରିବି ନାହିଁ । ପାରିବୁ ଯଦି ତୁ ସୁଧାରି ନେ ।

— କେମିତି ?

— ତୋ ଭାଉଜକୁ ତୁ ଗ୍ରହଣ କରିନେ ।

ତମେ ହୋସ୍‌ରେ ଅଛ ତ ସୋମୁଭାଇ ?

— ଗୋଟେ ଟ୍ରେନର ରିଜର୍ଭ କମ୍ପାର୍ଟମେଣ୍ଟରେ ଜଣେ ପୁରୁଷ ଓ ଜଣେ ମହିଳା ଯାତ୍ରୀ ପରି ଆମେ ଦୁଇଜଣ ଏଇ କିଛି ରାତ୍ର ହେବ ଯାତ୍ରା କରିଛୁ କେବଳ । ପରସ୍ପର ଅଜଣାଭାବେ ଓ ଭିନ୍ନ ଭିନ୍ନ ଗନ୍ତବ୍ୟ ପଥନେଇ । ସେ ପୂର୍ବଭଳି ପବିତ୍ର । ସେଥିରେ ଅସୁବିଧା କେଉଁଠି ?

ମାଉସୀ କେତେବେଳୁ ଆସି ଦ୍ୱାରପାଖରେ ଛିଡ଼ାହୋଇ ଆମ କଥା ଶୁଣୁଥିଲେ ମୋତେ ମାଲୁମ୍ ନ ଥିଲା । ସୋମୁଭାଇର କଥାଶୁଣି ସେ ତାଙ୍କର କ୍ରୋଧ ସମ୍ବରଣ କରି ନ ପାରି ପଶି ଆସି କହିଲେ — କ'ଣ କହିଲୁ ? କ'ଣ କହିଲୁ ଆଉ ଥରେ କହ ତ! ଶୁଣିଥିଲି ବଂଶନାଶ ବେଳେ ଘୋଡ଼ାମୁହାଁ ପୁଅର ଜନ୍ମ ହୁଏ । ତୁ ସେହି ଘୋଡାମୁହାଁ ପୁଅ । ନଚେତ୍ କେହି କେବେ ନିଜ ସ୍ତ୍ରୀକୁ ସାନଭାଇକୁ ଗ୍ରହଣ କରିବାକୁ କୁହେ ! ତୁ ନିଜକୁ କ'ଣ ଭାବିଛୁ କି ? ସେ ବୋହୂଟାକୁ ତୁ କ'ଣ ଭାବିଲୁ ? କେଉଁ ଅଧିକାରରେ ତୁ ତା'ବିଷୟରେ ଏତେ ବଡ଼ କଥାଟେ କହିଲୁ? ତୁ ତା ସ୍ୱାମୀ — ସ୍ୱାମୀ ନା ? ଦେଇଛୁ ତାକୁ ସ୍ତ୍ରୀର ଅଧିକାର ?

ମୁଁ ଅନୁମାନ କରିନେଲି କଥା ଗୁରୁତର ଆକାର ଧାରଣ କରିବ । ତେଣୁ ମାଉସୀଙ୍କୁ ବୁଝାଇବାକୁ ଯାଇ କହିଲି — ସୋମୁଭାଇ ଏଇନେ ମାନସିକ ଭାରସାମ୍ୟ ହରାଇ ବସିଛନ୍ତି । ସେ କ'ଣ କରୁଛନ୍ତି ନିଜେ ବି ଜାଣନ୍ତି ନାହିଁ । ତାଙ୍କ କଥାକୁ ଏତେ ଗୁରୁତ୍ୱ ଦିଅନି ମାଉସୀ ।

— ଗୁରୁତ୍ୱ ଦେବିନି ? ଜଣେ ନିଜେ ନିଜ ଖିଆଲରେ ପାଗଳ ହୋଇପାରେ ମାତ୍ର ତା'ପାଗଳାମିର ପରିଣାମ ଆଉ ଜଣେ କାହିଁକି ଭୋଗିବ ? ଆଜି ତା' ବାପା ଆସନ୍ତୁ — ମୁଁ ଏ କଥାର ଗୋଟେ ଫଇସଲା କରିଦେବି । ହଁ ମନେରଖ, ସେ ମୋର ବୋହୂ ନୁହେଁ ଝିଅ । ଦେଖ୍ ତୋ ବ୍ୟବସ୍ଥା ମୁଁ କ'ଣ କରୁଛି । ତୋତେ ଯଦି ଦାଣ୍ଡର ଫକୀର କରି ନ ବସାଇଛୁ ତେବେ ଯାଇ ମୋତେ ଚିହ୍ନିବୁ ।

ଯୋଗକୁ ମଉସା ସେହି ସମୟରେ ଆସି ଘରେ ପହଞ୍ଚିଗଲେ । କ୍ରୋଧର ଚରମ ସୀମାରେ ଥିବା ମାଉସୀ ମଉସାଙ୍କୁ ସବୁକଥା କହିଗଲେ । ମାଉସୀଙ୍କ କଥାଶୁଣି ମଉସା ଅସମ୍ଭବଭାବେ ଗମ୍ଭୀର ହୋଇଗଲେ । ତାଙ୍କ ଗମ୍ଭୀରଭାବକୁ ଦେଖି ମୁଁ ଆଶଙ୍କା କରିନେଲି ଏ ନିଶ୍ଚିତ ଝଡ଼ ପୂର୍ବର ନୀରବତା । କିଛି ଘଟିବ ନିଶ୍ଚୟ ।

ସତକୁ ସତ ପରଦିନ ସକାଳୁ ଓକିଲକୁ ଡକାଇ ପଠାଇଲେ ମଉସା । ଓକିଲ ଆସିବା ପରେ ସମସ୍ତ ସମ୍ପତ୍ତି ଭାଉଜଙ୍କ ନାମରେ ଉଇଲ କରିଦେଇ ସୋମୁଭାଇକୁ ତ୍ୟାଜ୍ୟପୁତ୍ର ବୋଲି ଘୋଷଣା କଲେ ।

ମୁଁ ଚେଷ୍ଟାକଲି ମଉସାଙ୍କୁ ବୁଝାଇ ଏତେବଡ଼ ନିଷ୍ଠୁର ନିଷ୍ପତ୍ତିରୁ ବିରତ କରିବାକୁ । ମାତ୍ର ସେ ଗୋଟେ ପଦ ମୋତେ କହିଲେ — ତୁ ଚୁପ୍ ରହ । ସେହି ପଦକର ଓଜନ ଏତେ ଥିଲାଯେ ମୋତେ ଲାଗିଲା ମୁଁ ଏଥିରେ ଚିପି ହୋଇଯିବି ।

ପରଦିନ ସକାଳୁ ସୋମୁଭାଇ ପ୍ରସ୍ତୁତ ହେଉଥିଲା ଘର ଛାଡ଼ିବାପାଇଁ । ସମଗ୍ର ପରିବାରରେ ଥିଲା ଗୋଟେ ଥମ୍‌ଥମ୍ ଭାବ । ଅଥଚ ସୋମୁଭାଇ ଆଦୌ ବିଚଳିତ ଜଣାପଡୁ ନ ଥିଲା । ସେ ଯେମିତି କୌଣସି ନୂଆ ଜାଗାକୁ ଚାକିରିରେ ଜଏନ୍ କରିବାକୁ ଯାଉଛି । ସେଭଳି ଭାବରେ ନିଜର ଆଟାଚ୍ ଓ କିଛି ବହିପତ୍ର ଗୋଟିଏ ବ୍ୟାଗ୍‌ରେ ରଖୁଥିଲା । ଏସବୁ ଦେଖି ମୁଁ ଖୁବ୍ ବିଚଳିତ ହୋଇପଡୁଥିଲି । ବାଧହୋଇ ମାଉସୀଙ୍କୁ କହିଲି— ରାଗତମ ହେଉ ବା ଅଭିମାନରେ ପଦେ କହିଦେଲା ବୋଲି କ'ଣ ଏଡ଼େବଡ଼ ଶାସ୍ତି ? କିଛି ଗୋଟେ କର ମାଉସୀ । ନଚେତ୍ ନେଡ଼ିଗୁଡ଼ କହୁଣିକୁ ବୋହିଗଲା ପରେ ଆଉ କିଛି କରିପାରିବ ନାହିଁ ।

ମାଉସୀ ତାଙ୍କର ନୀରବ ନିଷ୍ଫଳ ମୁଦ୍ରା ଭିତରୁ ଉଠି ଶୋଇବାଘରକୁ ଯାଇ ତକିଆ ଉପରେ ମୁହଁ ମାଡ଼ି ଶୋଇପଡ଼ିଲେ । ମୁଁ ଜାଣୁଥିଲି ଯେତେ ହେଲେ ମାଆ ମନ ତ । ପୁଅକୁ ଏତେ ବଡ଼ ଦଣ୍ଡଟିଏ ଦେବାବେଳେ କ'ଣ ନୀରବ ରହି ପାରିବେ । କିନ୍ତୁ ସେ ମଉସାଙ୍କର କ୍ରୋଧକୁ ସାମ୍ନାକରି ନିଷ୍ପତ୍ତିର ପୁନଃବିଚାରପାଇଁ କହିବାକୁ ସାହସ କରିପାରୁ ନ ଥିଲେ ।

ଏହି ସମୟରେ ଭାଉଜ କନକକୁ ସାଥୀରେ ଧରି ମଉସା ବସିଥିବା ଜାଗାକୁ ଗଲେ । କନକ କହିଲା — ବାପା, ଭାଉଜ ତୁମକୁ କ'ଣ କହିବେ ବୋଲି ଆସିଛନ୍ତି ।

— କ'ଣ କହିବ ?

ଭାଇଜ ଖୁବ୍ ଧୀର ଅଥଚ ଦୃଢ଼ କଣ୍ଠରେ କହିଲେ — ମୁଁ ଆପଣଙ୍କର ଏ ନିର୍ଣ୍ଣୟକୁ ସମର୍ଥନ କରିପାରୁନି ।

ମୁଁ ଆଶଙ୍କା କରୁଥିଲି ପୁଣି ଗୋଟାଏ ବୋମାର ଗର୍ଜନ ହୋଇପାରେ । ଅଥଚ ସେମିତି କିଛି ହେଲାନି, ବରଂ ମଉସା ପଚାରିଲେ — ଆଉ କିଛି କହିବ ?

— ଆପଣଙ୍କର ଏ ନିଷ୍ପତ୍ତି ମୋତେ ବେଶି ଅସହାୟା କରିବା ସହ ମୋ ପ୍ରତି ଦୟାସଦୃଶ ହେଉଅଛି ।

— ଆଉ ... ?

— ମୁଁ ଚାହେଁନା ମୋ ପାଇଁ ତାଙ୍କୁ ଏତେ ବଡ଼ ଶାସ୍ତି ମିଳିବା ସହ ଏ ପରିବାରର ସୁଖ ଶାନ୍ତି ସବୁଦିନ ପାଇଁ ଚାଲିଯାଉ । ଆପଣ ତାଙ୍କ ପ୍ରତି କରିଥିବା ଶାସ୍ତି ବିଧାନର ପୁନଃବିଚାର କରନ୍ତୁ ଏବଂ ମୁଁ ଆପଣଙ୍କୁ ପ୍ରତିଶ୍ରୁତି ଦେଉଛି ଏ ପରିବାରର ମାର୍ଯ୍ୟାଦା ଅକ୍ଷୁଣ୍ଣ ରଖି ମୋର ଅବଶିଷ୍ଟ ଜୀବନ ମୁଁ ଏଇଠି ଏକା ଏକା କାଟି ଦେବି ।

— ବାସ୍ ଥାଉ । ତମ କଥା ସରିଲା ତ ? ମୋ ନିଷ୍ପତ୍ତିର ପୁନଃବିଚାର କରିବା ଉଚିତ ବୋଲି ମୁଁ ଭାବୁ ନାହିଁ । ଆଉ ରହିଲା ମୋର ଭବିଷ୍ୟତ୍ କଥା । ତମେ ମୋ ବୋହୂ ନୁହେଁ ଝିଅ ଆଜିଠାରୁ । ତମ ପ୍ରତି ଏଇଟା ଗୋଟେ ଚ୍ୟାଲେଞ୍ଜ ଯେ ପୁରୁଷ ବିନା ଅବଳା କେବେ ଦୁର୍ବଳା ନୁହେଁ ପ୍ରମାଣ କରିବାକୁ ।

— ମୁଁ ଏ ଚ୍ୟାଲେଞ୍ଜକୁ ଗ୍ରହଣ କରୁଛି । ମାତ୍ର ମୁଁ ଦୁର୍ବଳା ନୁହେଁ ବୋଲି ନିଜକୁ ପ୍ରମାଣିତ କରିବାପାଇଁ ତାଙ୍କର ତ୍ୟାଜ୍ୟପୁତ୍ର ହେବାର କୌଣସି ଆବଶ୍ୟକତା ନାହିଁ । ସେ ଏଠାରେ ରହନ୍ତୁ । ଏ ପରିବାରର ସୁଖ, ଶାନ୍ତି ବଜାୟ ରହୁ । ମୁଁ ପ୍ରତିଶ୍ରୁତି ଦେଉଛି ଯେ ଆପଣ କେବେବି ମୋ ଭିତରେ ନାରୀସୁଲଭ ଆବେଗ, ବିଷାଦ କିମ୍ବା ଦୁଃଖ ଦେଖିବାକୁ ପାଇବେ ନାହିଁ । ଆପଣ ତ କହିଛନ୍ତି ମୁଁ ଆପଣଙ୍କର ବୋହୂ ନୁହେଁ ଝିଅ, ମୋତେ ଏବେ ଆପଣଙ୍କ ଝିଅର ଭୂମିକା ତୁଲାଇବାର ସୁଯୋଗ ଦିଅନ୍ତୁ ।

ମଉସା କିଛି ସମୟ ଧରି ଚିନ୍ତାକଲେ । ତା'ପରେ କହିଲେ ବେଶ୍ — ତମର ଯଦି ଏଇଆ ଇଚ୍ଛା ମୋର ଏଥିରେ ଆପତ୍ତି କରିବାର କିଛି ନାହିଁ ।

ମୁଁ ଆଶ୍ୱସ୍ତ ହେଲି ଯେ ଏକ ବିରାଟ ସମସ୍ୟାର ସମାଧାନ ହୋଇଗଲା । ମୁଁ ସୋମୁଭାଇ ପାଖକୁ ଯାଇ ତାକୁ ଏ ଖବରଟା ଦେଲି । ମୁଁ ଆଶା କରୁଥିଲି ସେ ତା'ର ପୌରୁଷର ସ୍ୱାଭିମାନ ଦେଖାଇ ଜିଦ୍ କରିବ ଘରଛାଡ଼ି ଚାଲିଯିବା ପାଇଁ । ମାତ୍ର ମୋଠାରୁ ସବୁ ଶୁଣିବା ପରେ କେବଳ ପଦଟିଏ କହିଲା— ମୋର ପରୀକ୍ଷା ପୂରଣ ହେବା ବୋଧହୁଏ ଗୁରୁଦେବ ଚାହାନ୍ତି । ହଉ ଠିକ୍ ଅଛି ।

ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି — କି ପରୀକ୍ଷା ?

— ଏବେ ତୋ' ଜାଣିବାର ସମୟ ହୋଇ ନାହିଁ । ଆସିଲେ ତୁ ଆପେ ଆପେ ଜାଣିପାରିବୁ ।

ମୁଁ ବି ଆଉ ବେଶି ବାଧ କଲି ନାହିଁ ତା'ଠାରୁ କଥାଟା ଜାଣିବାପାଇଁ । କାରଣ ମୁଁ ଭୟ କରୁଥିଲି ବେଶି ବାଧ କଲେ ପୁଣି କେଉଁଠି କ'ଣ ଗୋଳମାଳ ହୋଇଯାଇପାରେ । ତେଣୁ ମୁଁ ଚୁପ୍‌ରହି ମୋ ବାଟ ଧରିଲି । ଫେରିବା ବେଳେ

ମାଉସୀଙ୍କୁ କେବଳ କହିଲି — ଧୈର୍ଯ୍ୟ ଧର । ତଳ ପାଣି ପୁଣି ଉପରକୁ ଲେଉଟିବ ।

ଅନେକ ଦିନ ପର୍ଯ୍ୟନ୍ତ ମୁଁ ଆଉ ଯାଇ ନ ଥିଲି ମାଉସୀଘର । ତା'ପରେ ମୋର ଚାକିରି ନେଇ ମୋତେ ବାହାରେ ରହିବାକୁ ପଡୁଥିବାରୁ ମୁଁ ବି ତାଙ୍କ ଘର ବିଷୟରେ ବିଶେଷ ଖବର ରଖିପାରୁ ନ ଥିଲି । କେବଳ ଯା ବୋଉଠାରୁ କିଛି ଖବର ଶୁଣେ । ସେ ଭାଉଜ କିପରି ଶ୍ରୀମା ଅରବିନ୍ଦଙ୍କର ଭକ୍ତହୋଇ ପଣ୍ଡିଚେରୀ ଆଶ୍ରମରେ କିଛିଦିନ କଟାଇ ଫେରିବା ପରେ ତାଙ୍କ ଗ୍ରାମରେ ଆରମ୍ଭ କରିଥିଲେ ଏକ ଆବାସିକ ବାଳାଶ୍ରମ । ବାଳାଶ୍ରମରୁ ବିଦ୍ୟାଳୟ । ଏଇନେ ସେ ବିଦ୍ୟାଳୟରେ ହାଇସ୍କୁଲ ଯାଏ ଶିକ୍ଷାଦାନ ଚାଲିଛି । ଉନ୍ନତମାନର ଶିକ୍ଷାଦାନ ସହ ଉନ୍ନତ ମଣିଷ ଗଢ଼ିବାରେ ସେ ସ୍କୁଲର କିପରି ଚାରିଆଡ଼େ ନାଆଁଡାକ । କେବଳ ସେତିକି ନୁହେଁ ଅନାଥ ଶିଶୁମାନଙ୍କର ସେବା ଯତ୍ନ ଓ ଶିକ୍ଷାଦାନପାଇଁ ଭାଉଜଙ୍କୁ ମିଳିଛି ରାଷ୍ଟ୍ରସ୍ତରୀୟ ସମ୍ମାନ ।

ବୋଉ ତ ଥରେ ଆସି କହିଲା — ବୁଝିଲୁ ନା, ସୋମୁର ସ୍ତ୍ରୀ ଏଇନେ ଜଗତଯାକର ମାଆ । ଇଏ ସତ୍ୟାନାଶିଆ ସିନା ତା' କୋଳ ପୂରାଇବାକୁ ସୁଯୋଗ ଦେଲାନି, ଦେଇଥିଲେ ସେ ଅତି ବେଶିରେ ଗୋଟେ ଯୋଡ଼େ ଛୁଆଙ୍କର ମାଆ ଡାକ ଶୁଣିଥାନ୍ତା । ସେ ତ ଏବେ କେବଳ ସେ ସ୍କୁଲର ନୁହେଁ ସେ ଅଞ୍ଚଳର ବି ମାଆ । ମାଆ କହିଲେ ହିଁ ଲୋକେ ତାକୁ ବୁଝୁଛନ୍ତି । ସୋମୁଟା ମାଙ୍କଡ଼ଟାଏ, ଶାଳଗ୍ରାମକୁ ହାତରେ ଧରି ବି ଚିହ୍ନିପାରିଲା ନାହିଁ ।

ଅନେକ ଦିନପରେ ଥରେ ମୁଁ ଘରକୁ ଯାଇଥିବା ଖବର ପାଇ ସୋମୁଭାଇ ଆସି ଆମ ଘରେ ପହଞ୍ଚିଲା । ତା'ର ଆମ ଘରକୁ ଆସିବା ଯେମିତି ଅଭାବିତ ଥିଲା ସେମିତି ଆଶ୍ଚର୍ଯ୍ୟଜନକ ବି । କାରଣ ତାହାର ବାହାଘର ପରେ ସେ କୌଣସି ବନ୍ଧୁବାନ୍ଧବ ବା ଚିହ୍ନାପରିଚୟ ଲୋକଙ୍କ ଘରକୁ ଯାଉ ନ ଥିଲା ।

ସୋମୁଭାଇ ମୋତେ ଡାକି କହିଲା — ତୋ ଆସିବା ଖବର ଶୁଣି ମୁଁ ଆସିଛି ଏକ ବିଶେଷ କାର୍ଯ୍ୟରେ ତୋ' ପାଖକୁ । ମୋତେ ସାହାଯ୍ୟ କରିପାରିବୁ ?

— ବିଶେଷ କାର୍ଯ୍ୟ — ପୁଣି ମୋ ପାଖରେ ?

— ହଁ — ବିଶେଷ କାର୍ଯ୍ୟ ।

— କାର୍ଯ୍ୟଟି କ'ଣ ଶୁଣେ, ତା'ପରେ ଯାଇ ସାହାଯ୍ୟ କରିପାରିବି କି ନାହିଁ କହିବି ।

— ମୁଁ ମୋ ଗୁରୁଙ୍କ ଉପଦେଶକୁ କାର୍ଯ୍ୟକାରୀ କରିବାରେ ଅସଫଳ ହେବାରୁ ଏବେ ଚାହୁଁଛି ସଫଳ ଦାମ୍ପତ୍ୟକୁ ଫେରିଯିବାକୁ । ମାତ୍ର ତୋ ଭାଉଜ ମୋତେ ଭାଇ ବ୍ୟତୀତ ଅନ୍ୟ କୌଣସି ସମ୍ପର୍କରେ ଚିହ୍ନିବାପାଇଁ ପ୍ରସ୍ତୁତ ନୁହେଁ । ମୋ ଜୀବନଟା କ'ଣ ସବୁଥିରେ ଅସଫଳ ରହିଯିବ ?

— ତମ ଗୁରୁଙ୍କର ଉପଦେଶ କ'ଣ ଥିଲା ଶୁଣେ ?

— ବିରୋଧାଭାଷର କଷଟିରେ ଉତୁରୁଥିବା ଲୋକଙ୍କୁ ସେ କେବଳ ଶିଷ୍ୟତ୍ୱ ପ୍ରଦାନ କରନ୍ତି । ସଂସାର ପରିସରରେ ରହି ମୁଁ ଯଦି ବ୍ରହ୍ମଚାରୀ ବ୍ରତ ପାଳନରେ ସକ୍ଷମ ହୋଇଥାନ୍ତି ତେବେ ସେ ମୋତେ ଶିଷ୍ୟତ୍ୱ ଦେଇଥାଆନ୍ତେ ।

— ସେ ଶିଷ୍ୟତ୍ୱ ପ୍ରାପ୍ତିରୁ ତୁମକୁ କ'ଣ ମିଳିଥାଆନ୍ତା ?

— ମୁକ୍ତି —

— ମୁକ୍ତି କେଉଁଥିରୁ ?

— ସଂସାର ବନ୍ଧନରୁ ।

— ତମେ ତ ଏଇନେ ସଂସାର ବନ୍ଧନରୁ ମୁକ୍ତ । ପୁଣି ସେଥିରେ ପଶିବାକୁ କାହିଁକି ଚାହୁଁଛ ।

ମୁଁ ମୁକ୍ତ ହେଲି କେତେବେଳେ ? ସେ କହିଥିଲେ ନାରୀର ଶରୀର ପ୍ରତି ନିର୍ବିକାର ଓ ପ୍ରଭେଦଶୂନ୍ୟ ହେବା ପାଇଁ ।

— ତମେ ତ ହୋଇଛ ନା ?

— ହେଲି କେତେବେଳେ ? ପ୍ରତିଦିନ ପ୍ରତିମୁହୂର୍ତ୍ତରେ ମୋ ଚେତନ, ଅବଚେତନ ଓ ଅର୍ଦ୍ଧଚେତନ ମନରେ ତ ନାରୀ — ଇନ୍ଦ୍ରିୟ ସୁଖର ଆକାଂକ୍ଷା । ମୋ ଶରୀରରୁ ରକ୍ତ କ୍ଷରଣ କରି ମୁଁ ଚେଷ୍ଟା କରୁଥିଲି ମନକୁ ସେଥିରୁ ଦୂରେଇ ରଖିବାକୁ । ମାତ୍ର ସେଥିରେ ତୃଷ୍ଣା ପ୍ରଶମିତ ହେବା ବଦଳରେ ଦିନକୁ ଦିନ ବଢ଼ିଲା । ତେଣୁ ମୁଁ ନିଜର ଇନ୍ଦ୍ରିୟ ଆସକ୍ତି ପାଖରେ ହାର ମାନିଲି । ମାତ୍ର ତୋ' ଭାଉଜ ଏବେ କୌଣସି ସମ୍ପର୍କକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି ।

— ମୁଁ ତା'ହେଲେ କ'ଣ କରିପାରିବି ?

— ତୁ ତାକୁ ଟିକେ ବୁଝା । ମୁଁ ମୋ ଭୁଲ ମାନି ନେଲିଣି, ଗତ କଥାର ଇତି ହେଉ ।

— ସେ କ'ଣ ମୋ କଥା ରଖିବେ ?

— ମୁଁ ଆଶା କରୁଛି ରଖିବେ ବୋଲି ।

ସୋମୁଭାଇର କଥା ରଖି ମୁଁ ତାଙ୍କ ସାଙ୍ଗରେ ଗଲି । ମାତ୍ର ସେଠାରେ ପହଞ୍ଚି ଯାହା ଦେଖିଲି ସେଥିରେ ହସ୍ତକ୍ଷେପ କରିବାର ସାହସ କରିପାରିଲି ନାହିଁ । ଆମେ ପହଞ୍ଚିବା ବେଳକୁ ଭାଉଜ ବସିଥିଲେ ସନ୍ଧ୍ୟାକାଳୀନ ଧ୍ୟାନରେ । ମୋତେ ଲାଗୁଥିଲା ତାଙ୍କର ଧ୍ୟାନସ୍ଥ ମୁଦ୍ରାରୁ ଯେମିତି ଗୋଟିଏ ଜ୍ୟୋତି ଉକୁଟୁଛି । ତାଙ୍କର ମୁଖମଣ୍ଡଳ ଥିଲା ପ୍ରଶାନ୍ତ ଓ ଋଷିପ୍ରତିମ । ତାଙ୍କର ଧ୍ୟାନ ସରିବାଯାଏ ମୁଁ ବସିରହିଲି ସେଠାରେ କୃତ୍ରିମ ଧ୍ୟାନରେ ।

ସେ ଧ୍ୟାନରୁ ଉଠିବା ପରେ ମୁଁ ତାଙ୍କୁ ପ୍ରଣାମ କଲି । ସେ ଆଶୀର୍ବାଦ ମୁଦ୍ରାରେ ମୋତେ କହିଲେ — ଜଗଜ୍ଜନନୀ ତୁମର ମଙ୍ଗଳ କରନ୍ତୁ । ହଠାତ୍ ତୁମର ଆଗମନ ଏଠାକୁ କିପରି ?

— ବହୁତ ଦିନ ହେଲାଣି ଆସି ନ ଥିଲି ତ! ତେଣୁ ଭାବିଲି ଏଥର ତୁମକୁ ସାକ୍ଷାତ୍ କରିବାକୁ ।

— ହଉ ଆସ — ଆଶ୍ରମ ପରିସରରେ ଟିକେ ବୁଲ । ତାଙ୍କ ସହ ଆଶ୍ରମରେ ବୁଲିବା ବେଳେ ମୁଁ କହିଲି — ମୁଁ ଗୋଟେ ବିଶେଷ କାର୍ଯ୍ୟରେ ଆସିଥିଲି ଭାଉଜ ।

ସେ ମୋର କାର୍ଯ୍ୟ କ'ଣ ଜାଣିବାକୁ ବିଶେଷ ଉତ୍ସୁକତା ନ ଦେଖାଇ କହିଲେ— ଚାଲ, ଆଗକୁ ଯାଇ ଦେଖିବ ।

ଯାଉ ଯାଉ ସେ ଅଟକିଗଲେ ଜଣେ ପୋଲିଓଗ୍ରସ୍ତ ଅନ୍ତେବାସୀ ପାଖରେ ଯିଏ କି ବିନା ଆଶ୍ରାବାଡ଼ିରେ ଛିଡ଼ା ହେବାପାଇଁ ବାରମ୍ବାର ପ୍ରୟାସ କରୁଥିଲା । ଭାଉଜ କିଛି ସମୟ ସେଠାରେ ଛିଡ଼ାହୋଇ ତାକୁ ଦେଖିଲେ । ତା'ର ବାରମ୍ବାର ତଳେ ପଡ଼ିଯିବା ଦେଖି ସେ ତାକୁ କହିଲେ, "ଇଚ୍ଛାଶକ୍ତି ଦୃଢ଼ କର । ଦେଖିବ ତୁମେ ତୁମ ଲକ୍ଷ୍ୟରେ ପହଞ୍ଚିପାରିବ । ଉଚ୍ଛାଶକ୍ତି ଦୃଢ଼ କରି ନ ପାରିଲେ ନା ତମେ ଗୋଡ଼ରେ ନା ଆଶ୍ରାବାଡ଼ିରେ କେଉଁଥିରେ ବି ଛିଡ଼ା ହୋଇପାରିବ ନାହିଁ ।"

ଭାଉଜଙ୍କର କଥାବାର୍ତ୍ତା ମୋତେ ଲାଗୁଥିଲା ଯେମିତି ସେ ଏକ ଅନ୍ୟ ଜଗତର ମଣିଷ । ତେଣୁ ମୁଁ ସାହସ କରିପାରୁ ନ ଥିଲି ମୋ ଆସିବାର ଉଦ୍ଦେଶ୍ୟ ତାଙ୍କୁ ଜଣାଇବାକୁ । ତାଙ୍କ ସହ ଅନେକ ସମୟ ବୁଲିବା ପରେ ମଧ୍ୟ ମୁଁ କହି ପାରିଲି ନାହିଁ ମୋର ଉଦ୍ଦେଶ୍ୟ ।

ତାଙ୍କଠାରୁ ଫେରିଆସି ସୋମୁଭାଇଙ୍କୁ କହିଲି — ଦୃଢ଼ ଇଚ୍ଛାଶକ୍ତି ବିନା ତମେ ଯାହା ହେବାକୁ ଚେଷ୍ଟା କରୁଥିଲ ଏବେ ଭାଉଜ ସେଠାରେ ପହଞ୍ଚି ସାରିଛନ୍ତି । ଏବେ ତମର ଇଚ୍ଛା ପୂରଣ ନ ହେବାରୁ ତମେ ଯେଉଁଠିକୁଁ ଫେରିବାକୁ ଚେଷ୍ଟା

କରୁଛ ଭାଉଜ ସେ ସମ୍ପର୍କଠାରୁ ବହୁତ ଦୂରରେ ଏବଂ ତାଙ୍କୁ ଫେରାଇ ଆଣିବାର ତମର ପାର୍ଥିବ ଅଭୀପ୍‌ସାର ବହୁ ଉର୍ଦ୍ଧ୍ୱରେ । ତାଙ୍କୁ ଏବେ ତମର ସମ୍ପର୍କର ପରିଧିକୁ ଫେରାଇ ଆଣିବା ମୋର ସାଧାତୀତ । ସେ ଏଇନା ଇନ୍ଦ୍ରିୟଜୟୀ ଋଷିତୁଲ୍ୟା । ତାଙ୍କର ଦିବ୍ୟଦ୍ୟୁତି ପାଖରେ ମୁଁ ନିଜକୁ ଏତେ କ୍ଷୁଦ୍ର ମନେକଲି ଯେ ଏମିତି ଏକ ପ୍ରସ୍ତାବ ଉପାସ୍ଥାପନ କରିବାକୁ ମଧ ମୋର ବିବେକ ବାଧା ଦେଲା ।

— ତେବେ ... ?

— ସୋମୁଭାଇ, ମୁଁ ଭାବୁଛି ତମର ଗୁରୁଙ୍କ ଉପଦେଶ ନିଷ୍ଚୟ ଅଲଗା ଥିଲା ମାତ୍ର ତମେ ତାକୁ ଠିକ୍ ଭାବରେ ଗ୍ରହଣ କରିପାରିଲ ନାହିଁ ।

— ମାନେ !

ବିଷୟାଗତ ଜଗତରେ ରହି ଯଦି ତମେ ବିଷୟାସକ୍ତ ନ ହେଲ ତେବେ ତମେ ଯୋଗୀ ପର୍ଯ୍ୟାୟକୁ ଯାଇପାରିବ ଏବଂ ତମପାଇଁ ମୁକ୍ତିର ମାର୍ଗ ଉନ୍ମୁକ୍ତ ହେବ। ମାତ୍ର ତମେ ବିଷୟାସକ୍ତ ନ ହେବା ବଦଳରେ ବିଷାସକ୍ତ ହୋଇଗଲ । ତମ ଉପେକ୍ଷାର ବିଷକୁ ପାନକରି ଭାଉଜ ତାଙ୍କର ଲକ୍ଷ୍ୟ ବାଛିନେଇ ନୀଳକଣ୍ଠୀ ସାଜିଗଲେ । ସେ ଏଇନେ କେବଳ ତମ ପହଞ୍ଚର ଉର୍ଦ୍ଧ୍ୱରେ ନୁହଁ, ଆମ ସମସ୍ତଙ୍କ ପହଞ୍ଚର ଉର୍ଦ୍ଧ୍ୱରେ । ସେ ଏକ ଦୂର ନକ୍ଷତ୍ର ଯାହାଙ୍କୁ କେବଳ ଅନୁଭବ କରିହେବ, ଛୁଇଁ ହେବନି । ଆଉ ସେଠାକୁ ହାତ ବଢ଼ାଇ ଲାଭ ନାହିଁ ।

ଏହାର କିଛି ବର୍ଷ ପରେ ଶୁଣିଲି ସୋମୁଭାଇ ଆଚାର୍ଯ୍ୟ ସୌମ୍ୟାନନ୍ଦ ହୋଇ ଗୋଟେ ଆଶ୍ରମରେ ଅଛି ଏବଂ ଭୋଗବାଦୀ ଯୋଗର ଏକ ପ୍ରବୀଣ ପ୍ରବକ୍ତା ପାଲଟି ଯାଇଛି ।

# ବିଶ୍ୱାସର ପରିଭାଷା

ଦରମା ବିଲ୍ ଟ୍ରେଜେରୀରୁ ପାସ୍ ହୋଇ ବ୍ୟାଙ୍କ୍‌କୁ ଯାଇଛି । ବଡ଼ବାବୁ ବ୍ୟାଙ୍କ୍ ଯାଇଛନ୍ତି ପେମେଣ୍ଟ ଆଣି ଦରମା ଦେବାକୁ । ଦରମା ପାଇବା ଆଶାରେ ଆମେ ସବୁ ଆମ ଡିପାର୍ଟମେଣ୍ଟରେ ବସି ଖୁସି ଗପ ଜମାଇଥିଲୁ । ଜଣେ କହିଲେ - ଯା' ହେଉ, ସରକାର ବାହାଦୁର ଏତେ ଦିନରେ ଭଲ କାମଟିଏ କଲେ ପୂଜା ପୂର୍ବରୁ ଦରମା ଦେବାର ନିଷ୍ପତ୍ତି ନେଇ । ନଚେତ୍ ଏ ପୂଜାବଜାରଟା ପୂରା ମାନ୍ଦା ହୋଇଥାନ୍ତା ।

ହଁ ଭାଇ, ପୂଜାଟା ସିନା ଭଲରେ କଟିଯିବ, ହେଲେ ଘରଣୀମାନଙ୍କର ଏ ପୂଜା ବଜାରରେ ଏତେ ଫର୍ମାସ ବାହାରିବ ଯେ ପୂଜା ସରିଲା ବେଳକୁ ପକେଟ ଠୋ-ଠା-ଠି ହୋଇଯାଇଥିବ ।

ମହାନ୍ତିବାବୁ କହିଲେ - ଏବେ ତ ରାଜ୍ୟର ଦେବାଳିଆ ପରିସ୍ଥିତି । ସବୁବେଳେ ଓଭରଡ୍ରାଫ୍ଟ । ସେଥିରେ ଏ ବର୍ଷର ମରୁଡ଼ି ପରିସ୍ଥିତି ଯେପରି, ଦେଖ ଆଗକୁ ସରକାର ଦରମା ଦେଇପାରୁଛନ୍ତି କି ନାହିଁ । ଶିକ୍ଷା ଘରୋଇକରଣପାଇଁ ସ୍ୱର ଉଠିଲାଣି । ଯଦି କଥାଟା କେବେ ଠାକିଗଲା ତେବେ ଆମର ଏଇ ଜେନେରାଲ ଏଜୁକେଶନରେ ମାଛି ମାରିବାକୁ ପିଲା ନ ଥିବେ । ଟିଉସନ୍ ଫି ଆସିବ ଯେ ଦରମା ମିଳିବ ।

ହଉଁ - ଏ ନୂଆ ଅର୍ଥମନ୍ତ୍ରୀ କିଛି ଗୋଟିଏ ପରିବର୍ତ୍ତନ ଆଣିବେ ବୋଲି ଆଶା କରାଯାଉଛି । ଦେଖୁନ ଆସୁ ଆସୁ ଟ୍ୟାକ୍‌ସ ନିୟମରେ କେମିତି ପରିବର୍ତ୍ତନ କଲେଣି ।

ଆପଣ ଦେଖିଲେ ସେ ଟ୍ୟାକ୍‌ସ ନିୟମ ?

ଡିଟେଲ୍‌ସ କିଛି ଦେଖି ନାହିଁ, ଟି.ଭି.ର ହେଡ୍‌ଲାଇନ୍ ଶୁଣି ଯାହା କହୁଛି । ହଉ ଆପଣ ଆଗେ ଦେଖନ୍ତୁ ତା' ପରେ ଯାଇ ଜାଣିବେ ଖଡ଼ା, ବଡ଼ି, ଥୋଡ଼ ଓ ଥୋଡ଼, ବଡ଼ି ଖଡ଼ା ଏକା କଥା ବୋଲି ।

ସେ ବିଚରା ବି କ'ଣଟାଏ ଅଧିକା କରିପାରିବେ ବୋଲି ଆମେ କେମିତି ଆଶା କରିବା । ସବୁଠି ତ ରେଭିନ୍ୟୁ ଡେଫିସିଟ୍ ।

ରେଭିନ୍ୟୁ ଡେଫିସିଟ୍ କାହିଁକି ହେଉଛି ସେ କଥାକୁ କେହି ଯାଉ ନାହାନ୍ତି । ଯେଉଁଠି ରେଭିନ୍ୟୁ ମିଳିବ ସେଠି ତ ତସ୍କରମାନଙ୍କୁ ବସାଇବ । ସେମାନେ ରେଭିନ୍ୟୁ

କଲେକ୍‌ସନ୍ କରି ରାଜକୋଷକୁ ଦେବେ କ'ଣ, ନିଜ ଘରେ ଟଙ୍କା ରଖିବାପାଇଁ ତ ଟ୍ରେଜେରୀ ବସାଉଛନ୍ତି । ଆଉ ରହିଲେ ଉପୁରି ନ ଥିବା ଆମ ଭଳି କିଛି ଉଚ୍ଚବେତନଭୋଗୀ କର୍ମଚାରୀ । ସେମାନେ ତ ସୁଧାର ଗାଈ । ଯେତେ ଦୁହିଁଲେ ମନା ନାହିଁ, ବସାଅ ଯେଉଁଠି ଯେତେ ଟ୍ୟାକ୍‌ସ ବସାଇବାର ଅଛି ।

ଅଛିଣ୍ଡା ଗପର ସୁଅ ଚାଲିଥିବାବେଳେ ମହାନ୍ତିବାବୁ କହିଲେ - ଆରେ ପର୍ଶୁ ଗଲା କୁଆଡ଼େ, ଚା' ଫା' ଟିକେ ଆଣନ୍ତା । ପର୍ଶୁ ଆସି ପହଞ୍ଚିବାରୁ ତାକୁ ସଙ୍ଗେ ସଙ୍ଗେ ଚା', ପାନ ଓ ସିଗାରେଟ୍‌ର ଅର୍ଡର ଦିଆଗଲା । ପର୍ଶୁ ଠିକ୍ କରି ଜାଣେ କାହାର କେଉଁଟା, ଯଥା : ପାନ ଓ ସିଗାରେଟ୍ । ଚା' ଓ ପାନଦୋକାନରେ ସମସ୍ତଙ୍କର ଅଲଗା ଅଲଗା ଖାତା । ମିଳିତ ଭାବରେ ଚା' ଓ ପାନ ଆସିଲେ ବି ସେ ଯେଝା ଯେଝା ଖାତାରେ ଲେଖି ଦେଇଆସେ ।

ପର୍ଶୁ ଚାଲିଯିବା ପରେ ଆମମାନଙ୍କର ଆଲୋଚନା କେନ୍ଦ୍ରୀଭୂତ ହୋଇଗଲା ପର୍ଶୁ ଉପରେ । ପାଣିଗ୍ରାହୀବାବୁ ସମସ୍ତଙ୍କ ଉଦ୍ଦେଶ୍ୟରେ ପଚାରିଲେ - ଏଥର ପର୍ଶୁର ପୂଜା ବୋନସ୍ କେତେ ?

ଆମେ ମୋଟ ବାରଜଣ । ଦଶ ଦଶ ଟଙ୍କା ଲେଖାଏଁ ଦେଲେ ମୋଟ ଶହେ କୋଡ଼ିଏ ଦେଇଦେବା ।

ମୁଁ କହିଲି କ'ଣ ପୂଜା ଖର୍ଚ୍ଚ ଦେବା ନା ଭିକ ?

ହଉ ଆପଣ କହୁ ନାହାନ୍ତି କେତେ - ପାଣିଗ୍ରାହୀବାବୁ କହିଲେ ।

ମୁଁ କିଛି କହିବା ପୂର୍ବରୁ ଆଉ ଜଣେ କହିଲେ ନା, ଶହେ କୋଡ଼ିଏ ଟଙ୍କା ପର୍ଶୁ ପାଇଁ ଖୁବ୍ ନାପସନ୍ଦ ହେବ । ସେ ଯେମିତିକା ସ୍ୱାଭିମାନୀ ଗ୍ରହଣ ବି କରି ନ ପାରେ । ଦେଖୁ ନାହାନ୍ତି ତାକୁ ଯିଏ ଯେତେବେଳେ ଟଙ୍କା ଦେଇ ପାନ ସିଗାରେଟ୍ ପାଇଁ ପଠାଉଛନ୍ତି ଚିଲର ପଇସା ଯାଏଁ ସେ ହିସାବ କରି ଫେରାଉଛି । 'ତୁ ଚା' ଖାଇବୁ ରଖିଥା' କହିଲେ ବି ରଖେନି । ଏତଦ୍‌ବ୍ୟତୀତ ସେ ଖୁବ୍ ବିଶ୍ୱସ୍ତ ଓ ଆଜ୍ଞାଧୀନ । ମାସକୁ ମାତ୍ର ସାତଶହ ଟଙ୍କାରେ ସେ କ'ଣ କମ୍ ଖଟୁଛି ! ବିଚରା ଡେଲି ୱେଜରୁ କେବେ ପର୍ମାନେଣ୍ଟ ହେବ କେଜାଣି ?

ଏବେ ପରମାନେଣ୍ଟ ହେବା କଥାଟା ଭୁଲିଯାଅ । ଏବେ ପରା ଡି.ଏଫ୍.ଆଇ.ଡି. କହିଲାଣି ମୂଳ ପଦବୀରୁ ପଞ୍ଚସ୍ତରି ପ୍ରତିଶତ ଉଚ୍ଛେଦ ନ ହେଲେ ସେମାନେ ଋଣ ଦେବେ ନାହିଁ । ସରକାର ମାନିଲେ ମଲା ନ ମାନିଲେ ମଲା । ଏବେ ଶିଳ ଶିଳପୁଆ ଗଗନରେ ଉଡ଼ିବ ଆଉ ଏ ଶିମିଳିତୁଳା କହିବ - ନା ମୋତେ

ବାନ୍ଧ ବୋଲି । ଛାଡ଼ ତା' ପରମାନେଣ୍ଟ ହବା ନ ହବା ଭିତରେ କିଛି ଯାଏ ଆସେ୍ ନାହିଁ । ଜଣକା କୋଡ଼ିଏ ଟଙ୍କା ଲେଖାଏଁ ଦେଇଦେବ ।

ମହାପାତ୍ରବାବୁ କହିଲେ - ପର୍ଶୁ କହୁଥିଲା କ'ଣ ପୂଜାରେ ବୋଦା ବଳି ଦେବାପାଇଁ ମାନସିକ କରିଛି । ଯଦିଓ ସେ ମୁହଁ ଖୋଲି ମାଗି ନାହିଁ ତଥାପି ତାକୁ କିଛି ଅଧିକା ଦେଲେ ଭଲ ହେବ ।

ଅଧିକ ଯେ - କେତେ କହୁ ନାହାନ୍ତି ? - କହିଲେ ପାଣିଗ୍ରାହୀବାବୁ ।

କାଳେ ମହାପାତ୍ରବାବୁ ଖୁବ୍ ଅଧିକା କହିଦେବେ ସେଥିପାଇଁ ଆମ ଭିତରୁ ଜଣେ ତରତରରେ କହିଦେଲେ - ଛାଡ଼ନ୍ତୁ ଏତେ ଟଣାଓଟରା, ଜଣକା ତିରିଶ ଟଙ୍କା ଲେଖାଏଁ ଦେଇଦେବ । ଜଣେ ଦୁଇଜଣ ମୁହଁ ଆମିଳା କରି ରାଜି ହେଲେ, ଆଉ କେତେଜଣ କହିଲେ - ପିଲାଟା ଏତେ କରୁଛି, ନଉ ବର୍ଷରେ ଥରେ ତ ।

ଦରମା ମିଳିଲା ପରେ ପର୍ଶୁକୁ ସମସ୍ତେ ଧରାଇଦେଲେ ତିରିଶ ତିରିଶ ଟଙ୍କା । ମୁଁ ପର୍ଶୁକୁ ଗୋଟିଏ କୋଣକୁ ଡାକିନେଇ ତା' ହାତରେ ପାଞ୍ଚଶହ ଟଙ୍କା ଧରାଇଦେଇ କହିଲି - ତୁ ପା କ'ଣ ବୋଦା ବଳି ପାଇଁ ମାନସିକ କରିଛୁ । ରଖିଥା ଏ ଟଙ୍କାଟା ।

ସେ ନାହିଁ - ନାହିଁ କରି କହିଲା - ମୁଁ ଅନ୍ୟ କେଉଁଠୁ ଯୋଗାଡ଼ କରିନେବି ସାର୍ ! ପୂଜା ମାସ, ଆପଣଙ୍କର ବି ଖର୍ଚ୍ଚ ଥିବ ।

ତୁ ମୋ କଥା ଚିନ୍ତା ନ କରି ରଖ । ବହୁ କୁଣ୍ଠିତ ହୋଇ ସେ ରଖିଲା ।

ଅଷ୍ଟମୀ ଦିନ ସକାଳୁ ତା' ସ୍ତ୍ରୀ ଓ ପୁଅକୁ ଧରି ଚାଲିଥିଲା ପର୍ଶୁ । ସାଙ୍ଗରେ ଥିଲା ଡଉଲଡାଉଲ ବୋଦାଟିଏ । ବେକରେ ପଡ଼ିଥିଲା ମନ୍ଦାରର ମାଳ । ମର୍ଣ୍ଣିଂୱାକ୍ କରୁ କରୁ ମୁଁ ଦୂରରୁ ଦେଖିଥିଲି ପର୍ଶୁକୁ । ଭାବିଲି ଟଙ୍କା ନେବା ପାଇଁ ବଳିର ବାହାନା କରୁ ନ ଥିଲା ପର୍ଶୁ ।

ଦିନ ଏଗାରଟା ବେଳକୁ ପର୍ଶୁ ହାଜର ମୋ କ୍ୱାର୍ଟରରେ । କଥା କ'ଣ ପର୍ଶୁ ପଚାରୁ ପଚାରୁ ସେ ମୋ ସ୍ତ୍ରୀଙ୍କ ହାତକୁ ବଢ଼ାଇଦେଲା ପଲିଥିନ୍‌ରେ ପ୍ୟାକ୍ ହୋଇଥିବା ମାଂସ ପୁଡ଼ିଆଟେ । ମାଆଙ୍କ ପ୍ରସାଦ ଇଏ ମାଆ, ଏଥିରେ ବାର ଅବାର, ଆମିଷ ନିରାମିଷ ନ ଥାଏ ।

ଯୋଗକୁ ସେଦିନ ଥିଲା ରବିବାର । ପର୍ଶୁ ଦେଇଥିବା ମାଆଙ୍କ ପ୍ରସାଦ ହିଁ ଯଥେଷ୍ଟ ଥିଲା ଆମ ପରିବାରର ରବିବାର ପାଳନପାଇଁ । ମୁଁ ମନେ ମନେ ଭାବୁଥିଲି ପର୍ଶୁ ବୋଧେ କେବଳ ମୋ ଘରକୁ ହିଁ ପ୍ରସାଦ ପଠାଇଥିବ, କାହିଁକି ନା ତା' ଆବଶ୍ୟକତା ବୁଝି ମୁଁ ତାକୁ ପାଞ୍ଚଶହ ଟଙ୍କା ଦେଇଛି । ମାତ୍ର ସେଦିନ ସାନ୍ଧ୍ୟଭ୍ରମଣ

ସମୟରେ ମହାନ୍ତିବାବୁ ଯେତେବେଳେ ଆରମ୍ଭ କଲେ - ମାଆଙ୍କ ପ୍ରସାଦର ଗୋଟେ ମାହାତ୍ମ୍ୟ ଅଛି ନିଶ୍ଚୟ । ଦେଖନ୍ତୁ ଆଜିଯାଏ ମୁଁ ଯେତେଥର ମାଂସ ଖାଇଛି ଏତେ ତୃପ୍ତି କେବେ ପାଇ ନ ଥିଲି, ଆଜି ପର୍ଶୁ ଦେଇଥିବା ମାଆଙ୍କ ପ୍ରସାଦ ମୋତେ ଯେତେ ତୃପ୍ତି ଦେଇଛି ।

ମୁଁ ମନେ ମନେ ଭାବିଲି - ତେବେ ପର୍ଶୁ କେବଳ ମୋ ଘରକୁ ନୁହଁ, ମହାନ୍ତିବାବୁଙ୍କ ଘରକୁ ମଧ୍ୟ ପ୍ରସାଦ ପଠାଇଛି ।

ଆପଣ ଖାଇଲେ ତ ? ସେଥିରେ କିଛି ସ୍ୱାତନ୍ତ୍ର୍ୟ ବାରିପାରିଲେ ନା ନାହିଁ ?

ହଁ - ଖୁବ୍ ଭଲ ଲାଗିଲା ।

ପର୍ଶୁର ନଜରକୁ ଦେଖନ୍ତୁ ତ - ଆମ ଡିପାର୍ଟମେଣ୍ଟର ସମସ୍ତଙ୍କ ଘରକୁ ପାଖାପାଖି କେଜିଏ ମାଂସର ପୁଡ଼ିଆ ପଠାଇଥିଲା ।

ପରଦିନ ସକାଳୁ ପହଞ୍ଚିଯାଇ ମୋ ସ୍ତ୍ରୀଙ୍କୁ ପର୍ଶୁ ପଚାରିଲା - ମାଆ ! କାଲି ପ୍ରସାଦ ପାଇଲେ ତ ?

ମୋ ସ୍ତ୍ରୀ ତାକୁ କହିଲେ - ତମେ ପ୍ରସାଦ ଦେଇଥିଲ, ମୁଁ କେମିତି ପାଇ ନ ଥାନ୍ତି କହିଲ ।

ତାଙ୍କର ଏହି କଥାବାର୍ତ୍ତା ସମୟରେ ମୁଁ ପହଞ୍ଚିଯାଇ ପଚାରିଲି - ତମର ବଳି ବୋଦାଟି କେତେ କେ.ଜି. ଥିଲା କି ପର୍ଶୁ ?

ବଳି ଚଢ଼ାଇଥିଲି ସାର୍ - ତା ମାଂସକୁ କଣ ଓଜନ କରିଛି । ଯାହା ମାଂସ ହେଲା ତେର ଭାଗ କରିଦେଲି ଓ ଆମ ଡିପାର୍ଟମେଣ୍ଟର ସମସ୍ତଙ୍କ ଘରକୁ ଭାଗେ ଭାଗେ ପଠାଇ ଆମ ଘର ପାଇଁ ଭାଗେ ରଖିଲି ।

ମୁଁ ମନେ ମନେ ଚିନ୍ତା କଲି ମାତ୍ର ତିରିଶ ଟଙ୍କା ଦେବାପାଇଁ କାର୍ପଣ୍ୟ ପ୍ରକାଶ କରୁଥିବା ମୋର ସହକର୍ମୀମାନେ ପର୍ଶୁର ପ୍ରସାଦର ବଜାର ମୂଲ୍ୟ ନିଶ୍ଚୟ ହିସାବ କରିଥିବେ । ସେମାନେ ପର୍ଶୁକୁ ଟିପ୍‌ସ ଦେଇଥିଲେ ମାତ୍ର ପର୍ଶୁ ସେମାନଙ୍କୁ ଦେଇଥିଲା ଦଶହରା ଭେଟି ।

ଆଚ୍ଛା ପର୍ଶୁ, ତମେ କ'ଣପାଇଁ ମାନସିକ କରିଥିଲ ?

କିଛି ମାନସିକ ନୁହେଁ ଆଜ୍ଞା - ବର୍ଷରେ ଥରେ ମାଆଙ୍କ ପାଖରେ ବଳି ଚଢ଼ାଇ ପରିବାରର ଦେହପା' ଭଲ ରଖିବାକୁ ମାଆଙ୍କୁ ପ୍ରାର୍ଥନା କରେ । ମାଆଙ୍କ କୃପାରୁ ଆଜିଯାଏ ପରିବାରରେ ଜ୍ୱର-ବାଧିକା କାହାକୁ ହୋଇନି । ନଚେତ୍ ଆମର ଏ ଅଳ୍ପ ରୋଜଗାରରେ ଆମ କ'ଣ ଏ ଡାକ୍ତର ବଇଦ ଧନ୍ଦା ତୁଲାଇ ପାରନ୍ତୁ ।

ତମ ସ୍ତ୍ରୀ ବି କ'ଣ କିଛି କାମଧନ୍ଦା କରୁଛନ୍ତି କି ?

ନ କଲେ ଚଳିବୁ କେମିତି ଆଜ୍ଞା ! ମାସକୁ ସାତଶହ ଟଙ୍କାରେ କ'ଣ ଏ ମହରଗ ଯୁଗରେ ଚଳିହେବ । ସେ ଦୁଇଘର ପାଇଟି କରୁଛି, ସେଥିରୁ ମିଳୁଛି ପାଞ୍ଚଶହ । ତା ଟଙ୍କାରେ ଘରଭଡ଼ା ଓ ପନିପରିବା ଖର୍ଚ୍ଚ ହୋଇଯାଉଛି । ମୋ ଟଙ୍କାରେ ଏମିତି ସେମିତି କରି ଚଳୁଛି ଖାଲି ଯାହା ପିଲାଙ୍କ ପଢ଼ାପଢ଼ି ଟିକେ ଟାଣି ହେବାକୁ ପଡୁଛି ।

ସରକାରଙ୍କର ନୂଆ ନିୟମରେ ତମର ତ କଲେଜରେ କେବେ ପରମାନେଣ୍ଟ ହେବାର ସମ୍ଭାବନା ନାହିଁ, କାହିଁକି ଏତେ ଅଳ୍ପ ଟଙ୍କାପାଇଁ ମୁହଁ ମାଡ଼ି ପଡ଼ିଛ ? ଅନ୍ୟ କିଛି ଗୋଟେ ଧନ୍ଦା କରୁନ ।

କ'ଣ ଆଉ କରିପାରିବି ଆଜ୍ଞା ! ଗାଆଁରେ ବାଡ଼ି ଗୋବରେ ଗୋବେ ବୋଲି ଜମି ନାହିଁ । ସେଠି କାମ ଧନ୍ଦା ମିଳିବା ବି ସପନ । ମୋ ଭଳି ତ ସମସ୍ତେ ଖଟିଖିଆ । ସରକାରୀ ରାସ୍ତାଘାଟ, ପୋଖରୀ ପୁଷ୍କୁରା କାମରେ ବର୍ଷରେ ମାସେ ଅଧେ କାମ ମିଳୁଥିଲା । ସେଥିରେ ବି ବହୁ ଦଳାଦଳି, ରାଜନୀତି ହେଲା । କିଛି ଉପାୟ ନ ପାଇ ଗାଆଁ ଛାଡ଼ି ଦେଲି ।

ଏବେ ସିନା ବଳବୟସ ଅଛି ଖଟୁଛ, ବଳବୟସ ହଟିଲେ ? ତମର ତ ଗୋଟେ ଭବିଷ୍ୟତ୍ ଅଛି ନା ? ଏବେଠୁ ଭବିଷ୍ୟତ୍‌କୁ ଦୃଷ୍ଟିରେ ରଖି କିଛି ରଖିବା କଥା ନା ।

ଆମମାନଙ୍କ ଜୀବନରେ ଭବିଷ୍ୟତ୍ ନ ଥାଏ ଆଜ୍ଞା - କେବଳ ବର୍ତ୍ତମାନ । ଆମେ ବର୍ତ୍ତମାନରେ ବଞ୍ଚୁ, ବର୍ତ୍ତମାନରେ ମରୁ, ହାତଗୋଡ଼ ଚାଲୁଥିବା ଯାଏ ଆମର ବର୍ତ୍ତମାନ ବଞ୍ଚେ । ହାତଗୋଡ଼ ବନ୍ଦ ହୋଇଗଲେ ଆମର ବର୍ତ୍ତମାନ ବି ମରିଯାଏ ।

ତମେ କେବଳ ତମର ନିଜ କଥା ଭାବୁଛ ବୋଧେ - ତମ ପିଲାଛୁଆଙ୍କ କଥା କେବେ ଭାବିଛ ?

ଭାବେ ଆଜ୍ଞା, ହେଲେ ଭାବିକି ଖାଲି କ'ଣ କରିପାରିବି ? ମୋ ଜେଜେବୋପା କ'ଣ ଭାବି ନ ଥିବ ମୋ ବାପ କଥା, ମୋ ବାପା ବି କ'ଣ ଭାବି ନ ଥିବ ମୋ କଥା ? ଭାବିଥିବେ ନିଶ୍ଚୟ ହେଲେ କ'ଣ କରିପାରିଲେ ?

ଚାକିରି ଫାକିରି କଥା ଛାଡ଼ି ତମେ କୌଣସି ବେପାର ବଣିଜ କରିବା କଥା ଚିନ୍ତା କରୁନ ?

ଚିନ୍ତା କରିବା ଛଡ଼ା ଅନ୍ୟ କିଛି କରି ହେବନି ବୋଲି ତ ସେକଥା ଚିନ୍ତା କରୁନି ।

କାହିଁକି କରି ହେବନି ?

ସାର୍ - ବେପାର ବଣିଜ ପାଇଁ ପୁଞ୍ଜି ଦରକାର, ମୁଁ ତାକୁ ଆଣିବି କେଉଁଠୁ ?

ଆରେ ବ୍ୟାଙ୍କ୍‌ବାଲା ଏତେ ଲୋନ୍ ଦେଉଛନ୍ତି - ତମକୁ ଟଙ୍କା ମିଳିବ ନାହିଁ ବୋଲି କାହିଁକି ଭାବୁଛ ?

ବ୍ୟାଙ୍କ୍ କଥା କହିଲେ ଯେ ସାର୍, କଲେଜ୍‌ରେ କାମ କରିବା ପୂର୍ବରୁ ଠେଲାଟିଏ ପକାଇ ବେପାର କରିବି ବୋଲି ଅନେକଥର ଧାଇଁଛି ବ୍ୟାଙ୍କକୁ । ହୋଇଯିବ- ହୋଇଯିବ ଆଶାରେ ବହୁତ ଦିନ ଧାଇଁବା ପରେ ସେମାନେ ଖୋଜିଲେ ଗ୍ୟାରେଣ୍ଟର । ମୁଁ ଗ୍ୟାରେଣ୍ଟର ଯୋଗାଡ଼ କରିପାରିଲି ନା ଲୋନ୍ ମିଳିଲା । ସେବେଠାରୁ ବେପାର ଆଶା ଛାଡ଼ି ଏଥିରେ ପଶିଛି । ଏମିତି ଯେତେଦିନ ଚାଲିବ ଚାଲୁ ।

ମୁଁ ଜାଣୁଥିଲି ଜଣକୁ ଉପଦେଶରେ ମାର୍ଗ ଦର୍ଶାଇବାଟା ଯେତିକି ସହଜ, ସେତିକି ସହଜରେ ମାର୍ଗ ମିଳେ ନାହିଁ । ଭାବିଲି ମୋର ବ୍ୟାଙ୍କ ଏକାଉଣ୍ଟ ଅଛି । ଏକାଉଣ୍ଟର ଟଙ୍କାକୁ ଛାଡ଼ି ବେଶ୍ କିଛି ସ୍ଥାୟୀ ଜମା ବି ରହିଛି । ମୁଁ ଯଦି ତା'ର ଗ୍ୟାରେଣ୍ଟର ହୋଇଯାଏ ତେବେ ବ୍ୟାଙ୍କବାଲା ତାକୁ ସାଙ୍ଗେ ସାଙ୍ଗେ ଲୋନ୍ ଦେଇଦେବେ । ପୁଣି ଭାବିଲି ଗ୍ୟାରେଣ୍ଟର ହୋଇଯିବି ଯେ - ହେଲେ କି ଭରସା ଅଛି ସେ ବେପାରରେ ସଫଳ ହେବ । ଯଦି ସଫଳ ହୁଏ ତେବି କି ଭରସା ଅଛି ସେ ଲୋନ୍ ପରିଶୋଧ କରିବ । ସେ ଯଦି ଲୋନ୍ ନ ଶୁଝିଲା ତେବେ ତ ବ୍ୟାଙ୍କ୍ ବାଲା ମୋ ସ୍ଥାୟୀ ଜମାକୁ ସେ ଲୋନ୍‌ରେ ଆଡ଼ଜଷ୍ଟ କରିଦେବେ । ମୋ ଭବିଷ୍ୟତ୍ ଓ ପିଲାମାନଙ୍କ ପଢ଼ା ଖର୍ଚ୍ଚ ପାଇଁ ମୁଁ ଯାହା ରଖିଛି ସେତକ ଚାଲିଗଲେ ମୁଁ କ'ଣ କରିବି ? ସେ ତ ତା'ର ଗୁଜୁରାଣ ଯାହା ତାହି ଚଳାଇ ନେଉଛି । ମୋତେ ବି ତ କେବେ ଗ୍ୟାରେଣ୍ଟର ହେବାପାଇଁ ଅନୁରୋଧ କରି ନାହିଁ । ଅଯଥାରେ କାହିଁକି ଝମେଲାରେ ପଶି ମୁଁ ଘାଣ୍ଟି ହେବି ।

କଲେଜ କାମ ପରେ ପର୍ଶୁର ଅଧିକାଂଶ ସମୟ କଟୁଥିଲା ଆମ ଅଧ୍ୟାପକ କଲୋନୀରେ । ସେ ଅଧିକାଂଶଙ୍କର ଘରୋଇ କାର୍ଯ୍ୟ, ଯଥା—ବଜାରରୁ ପନିପରିବା ଆଣିବା, କାହାର ପିଲାକୁ ନେଇ ସ୍କୁଲ୍‌ରେ ଛାଡ଼ିବା, ଇଲେକ୍ଟ୍ରି ଲାଇନ୍, ପାଣି ପାଇପ୍ ଇତ୍ୟାଦି ମରାମତି କରି ଦେଉଥିଲା । ସମସ୍ତଙ୍କ ଘର ଅପେକ୍ଷା ସେ ମୋ ଘରକୁ ଅଧିକ ଆସୁଥିଲା ଏବଂ ଘରର ଯାବତୀୟ ଛୋଟ ମୋଟ କାର୍ଯ୍ୟ ସହ ମୋ କ୍ୱାର୍ଟର ସଂଲଗ୍ନ ବାଡ଼ିଟିରେ ବିଭିନ୍ନ ପନିପରିବା କରିଥିଲା । ତା'ର ଶ୍ରମ ପାଇଁ ହିଁ ଆମ ବାଡ଼ିରେ ଫଳୁଥିଲା ବାରମାସୀ ପରିବା । ଘରେ କାହାର ଦେହପା' ଖରାପ ହୋଇଗଲେ ସେ ରୀତିମତ ଜଣେ ସେବାକାରୀର ଭୂମିକା ତୁଲାଉଥିଲା ।

ଥରେ ମୋ ପୁଅର ଜଣ୍ଡିସ୍ ହେଲା । ଜଣ୍ଡିସ୍‌ର ଭୟାବହତାପାଇଁ ଆମେ ବଡ଼ ଚିନ୍ତିତ ହୋଇପଡ଼ିଥିଲୁ । ଡାକ୍ତରଙ୍କୁ ବାରମ୍ବାର ଦେଖା ଚାଲିଥାଏ । ମାତ୍ର ପର୍ଶୁ ସବୁବେଳେ କହୁଥାଏ - ସାର୍ ! ଆପଣ ଡାକ୍ତରଙ୍କୁ ଦେଖାଉଥାନ୍ତୁ, ମୋର ମନା ନାହିଁ । ମାତ୍ର ଏ ରୋଗ ଡାକ୍ତରଙ୍କ ସାଧ ରୋଗ ନୁହେଁ । ଆମ ଗାଁରେ ଗୋଟେ ହୁକୁମ୍ ଔଷଧ ମିଳେ, ସେଥିରୁ ପାନେ ଖୋଇଦେଲେ ଏ ରୋଗ ଭଲ ହୋଇଯିବ । ତା'ର ଏକଥା କହିବାର ଉଦ୍ଦେଶ୍ୟ ବୋଧହୁଏ ଥିଲା ମୁଁ ତାକୁ ଖର୍ଚ୍ଚବାର୍ଚ୍ଚ ଦେଇ ତା'ଗାଁକୁ ପଠାଏ ଔଷଧପାଇଁ । ତା' ଉଦ୍ଦେଶ୍ୟକୁ ଶୁଣି ନ ଶୁଣିଲା ପରି ରହି ଯାଉଥିଲି । କ୍ରମାଗତ ଦଶବାର ଦିନ ଚିକିତ୍ସା ପରେ ମଧ ଜଣ୍ଡିସ୍ କମିବାର ଲକ୍ଷଣ ଦେଖାଯାଉ ନ ଥାଏ । ଡାକ୍ତର ଆମର ବ୍ୟସ୍ତତା ଦେଖି କହୁଥାଆନ୍ତି - ଏ ରୋଗ ଏମିତି ଧୀରେ ଧୀରେ କମିବ । ଭଲ ହେବ ଆପଣ ଆମ ଡାକ୍ତରୀ ଔଷଧ ସହ ଟୁଟୁକା ଔଷଧ ମଧ ଦିଅନ୍ତୁ । ମୋ ନିଜ ପିଲାକୁ ମଧ ମୁଁ ସେ ଔଷଧ ଦେଇଥିଲି, ଭଲ କାମ କରିଥିଲା ।

ଡାକ୍ତରଙ୍କ ପରାମର୍ଶ ପରେ ଯାଇ ମୋର ହେଜ ପଶିଲା ପର୍ଶୁ କଥାକୁ । ଖୋଜିଲି ତାକୁ । ମାତ୍ର ସେ ଦୁଇଦିନ ହେଲା ଆମ ଘରକୁ ଆସି ନ ଥିଲା । ଡିପାର୍ଟମେଣ୍ଟରେ ବୁଝିଲି ଯେ ସେ ଦୁଇଦିନ ହେଲାଣି ଛୁଟିରେ ଅଛି । ଆରେ ଗଲା କୁଆଡ଼େ ସେ ? କେବେ ତ ମୋତେ ନ କହି ଛୁଟିରେ ରହେ ନାହିଁ, ମୋର ଏ ଅସୁବିଧା ବେଳେ ସେ କୁଆଡ଼େ ଛୁ । ବେଇମାନ୍‌ଟାଏ କି - କମ୍ ସେ କମ୍ ତ ମୋତେ କହି କରି ଯାଇପାରିଥାଆନ୍ତା ।

ସେଦିନ ସନ୍ଧ୍ୟାରେ ପର୍ଶୁ ଫେରିଲା । ବସ୍‌ଷ୍ଟାଣ୍ଡରୁ ସେ ତା' ଘରକୁ ନ ଯାଇ ସିଧା ପହଞ୍ଚିଲା ଆମ ଘରେ । ମୁଁ ତାକୁ ରାଗିକରି ପଚାରିଲି - ତମେ କାହାକୁ କିଛି ନ କହି କୁଆଡ଼େ ପଳାଇ ଯାଇଥିଲ ? ସେ ମୋ ପ୍ରଶ୍ନର ଉତ୍ତର ନ ଦେଇ ତା'ବ୍ୟାଗରୁ ବାହାର କଲା ଔଷଧ । ମୋ ସ୍ତ୍ରୀଙ୍କ ହାତକୁ ବଢ଼ାଇଦେଇ କହିଲା - ଏବେ ଏ ଔଷଧକୁ ଖୁଆଇଦେଇ ଏ ମାଳିଟିକୁ ତାଙ୍କ ବେକରେ ବାନ୍ଧି ଦିଅନ୍ତୁ । ଏ ମାଳି ବଢ଼ି ବଢ଼ି ବାବୁଙ୍କ ଗୋଡ଼ଦେଇ ତଳକୁ ଖସିଗଲେ ଜାଣିବ ଜଣ୍ଡିସ୍ ପୂରା ଛାଡ଼ିଗଲା ବୋଲି । ଆପଣ ସିନା ଡାକ୍ତର ଡାକ୍ତର ହେଉଛନ୍ତି, ହେଲେ ଡାକ୍ତରୀ ପାଠରେ ପରା ଏ ରୋଗର ଔଷଧ ବାହାରି ନାହିଁ । ମୁଁ ଏ ଔଷଧ ଯାହାଠାରୁ ଆଣିଛି, କେତେ କେତେ ଡାକ୍ତର ଯାଇ ସେଠାରେ ଲାଇନ୍ ଦିଅନ୍ତି ନିଜ ପିଲାପାଇଁ ଔଷଧ ନେବାକୁ ।

ଡାକ୍ତରଙ୍କଠାରୁ ତୁଟୁକା ଔଷଧ ବିଷୟରେ ଶୁଣିଥିବାରୁ ଔଷଧ କଥାକୁ ମୁଁ ଟିକେ ବିଶ୍ୱାସ କଲି ସତ, ହେଲେ ଏ ମାଳି ଯେଉଁଟା ବେକରେ ଚିପି ହୋଇ ବନ୍ଧାଯିବ, ସେଟା କେମିତି ଗୋଡ଼ ବାଟେ ବାହାରିଯିବ? ଭଲ ଅଡୁଆରେ ପକାଇଲା- ଏ ମାଳିଟା ନ ବାହାରିବାଯାଏଁ ତ ଆମେ ଭାବିପାରିବୁ ନାହିଁ ରୋଗ ଭଲ ହୋଇଗଲା ବୋଲି, ହଉ ଦେଖାଯାଉ କ'ଣ ହେଉଛି।

ତୁଟୁକା ଔଷଧ ସହ ଡାକ୍ତରୀ ଚିକିତ୍ସା ଚାଲିଥିବାରୁ ପ୍ରକୃତରେ କେଉଁ ଔଷଧ ଦ୍ୱାରା ପୁଅ ଟିକେ ଟିକେ ଭଲ ଆଡ଼କୁ ଗତି କରୁଥିଲା ମୁଁ ଜାଣିପାରୁ ନ ଥିଲି। ମାତ୍ର ମୋ ସ୍ତ୍ରୀ ଯେତେବେଳେ କହିଲେ, ପୁଅ ବେକରେ ଚିପି ହୋଇ ରହିଥିବା ମାଳିଟି ଟିକେ ଟିକେ ଲମ୍ବିଲା ପରି ଜଣାପଡୁଛି, ମୁଁ ଅବିଶ୍ୱାସରେ ପୁଅ ବେକର ମାଳିଟିକୁ ଦେଖିଲି । ଯେହେତୁ ତା ବେକରେ ମାଳି ବାନ୍ଧିବା ବେଳେ ମୁଁ ଦେଖି ନ ଥିଲି ତେଣୁ ବିଶ୍ୱାସ ନ କରି କହିଲି ସୂତାଟା ଟିକେ ଟିକେ ସରୁ ଥିବ । ମାତ୍ର ଆମ ଅବିଶ୍ୱାସ ବିଶ୍ୱାସରେ ବଦଳିଗଲା ଯେତେବେଳେ ତିନି ଦିନ ପରେ ଆମେ ଦେଖିଲୁ ପୁଅ ବେକରେ ମାଳିଟା ନ ଥିଲା । ଘର ବାହାର, ବିଛଣାପତ୍ରଠାରୁ ଆରମ୍ଭ କରି ସମସ୍ତ ସମ୍ଭାବ୍ୟ ସ୍ଥାନଗୁଡ଼ିକ ଖୋଜାଖୋଜି କଲାପରେ ମଧ ଆମେ ପାଉ ନ ଥିଲୁ ମାଳିଟିକୁ । ଠିକ୍ ଏହି ସମୟରେ ପର୍ଶୁ ଆସି ପହଞ୍ଚି ଆମର ମାଳି ଖୋଜା ବ୍ୟସ୍ତତା ଦେଖି କହିଲା - ତାକୁ ଯେତେ ଖୋଜିଲେ ସେ କ'ଣ ମିଳିବ । ସେଇଟା ହୁକୁମ ମାଳି, କାର୍ଯ୍ୟ ସରିଗଲେ ହୁକୁମ ମାନି ଅନ୍ତର୍ଦ୍ଧାନ ହୋଇଯାଏ । ମୁଁ ତ ମୂଳରୁ ଏକଥା କହୁଥିଲି । ଆପଣ ତ ଜମା ବିଶ୍ୱାସ କରୁ ନ ଥିଲେ । ବାବୁ ଆମର କେତେ ଭୋଗିଲେ ସତେ ! ମୁଁ ବା କ'ଣ କରିପାରିଥାଆନ୍ତି ? ହାତରେ ପଇସା ଥିଲେ ତ ମୁଁ କାହାକୁ ଅପେକ୍ଷା ନ କରି ସିଧା ସିଧା ଚାଲିଯାଇଥାନ୍ତି ।

ଡାକ୍ତର ପରୀକ୍ଷା କରିସାରି ଯେତେବେଳେ କହିଲେ ପୁଅର ଜଣ୍ଡିସ୍ ପୂରା ଭଲ ହୋଇଯାଇଛି ବୋଲି ମୁଁ ପର୍ଶୁର ତୁଟୁକା ଔଷଧର ଚମତ୍କାରିତାକୁ ବିଶ୍ୱାସ କଲି । ପର୍ଶୁର ନିଷ୍ଠା ଓ ଆଗ୍ରହକୁ ମୁଁ ସନ୍ଦେହ କରିଥିବାରୁ ନିଜକୁ ଧିକ୍କାର କଲି ।

ଏହାପରେ ପର୍ଶୁ ସହ ଆମର ସଂପର୍କ ଆଉ ଟିକେ ଅଧିକ ବଢ଼ି ଯାଇଥିଲା । ସେ ଆମ ପରିବାରର ସଦସ୍ୟ ପରି ହୋଇଯାଇଥିଲା । ଏହି ସମୟରେ ମୋ ଝିଆରୀର ବାହାଘର ଠିକ୍ ହୋଇଗଲା । ମୁଁ ଥିବା ଜାଗାରେ ଭଲ ଫର୍ଣ୍ଣିଚର ମିଳୁଥିବାରୁ ମୋ ଉପରେ ଦାୟିତ୍ୱ ଥିଲା ସମସ୍ତ ଫର୍ଣ୍ଣିଚର ପଠାଇବାକୁ । ଫର୍ଣ୍ଣିଚର ତ ରେଡ଼ି ହୋଇଯାଇଥିଲା, ହେଲେ ସେସବୁ ନେଇ ଯିବ କିଏ ? ଏକଥା ଚିନ୍ତା କରୁଥିବା ବେଳେ ପର୍ଶୁ କହିଲା - ମୁଁ ବା କାହିଁକି ଅଛି ସାର୍, ସେସବୁ ଜିନିଷକୁ

ଗୋଟିଏ ଗାଡ଼ିରେ ଧରି ବାହାରିବା । ଦୁର୍ଯୋଗକୁ ଫରେଷ୍ଟବାଲାଙ୍କ ଚେକିଂରେ ଧରାପଡ଼ିଲା, ଗାଡ଼ିବାଲା ପର୍ଶୁକୁ ଜିନିଷର ମାଲିକ କହି ଖସି ଆସିଲା । ପର୍ଶୁ ଧରାହୋଇ ଜେଲ ଗଲା । ତା'ର ଚେହେରାରୁ ସେ ଏସବୁର ମାଲିକ ହୋଇ ନ ଥିବ ଭାବି ପୋଲିସ୍‌ବାଲା ତାକୁ ଯେତେ ଜେରା କଲେ ବି ସେ ମୋ ନାଆଁ ଧରିଲା ନାହିଁ । ମୁଁ ତାକୁ ବେଲ୍‌ରେ ମୁକୁଳାଇ ଆଣିଲି ସତ କିନ୍ତୁ କେଶ୍ ଚାଲିଥିଲା ବହୁଦିନ ଯାଏ ।

ଝମେଲା ସବୁ ମେଣ୍ଟିଲା ପରେ ମୁଁ ଥରେ ପର୍ଶୁକୁ ଏମିତି ମଜା କରି ପଚାରିଲି – ଆଚ୍ଛା, ତୁ ମୋ ନାଆଁ ନ ନେଇ ସେସବୁ ଜିନିଷ ତୋ'ର ବୋଲି କାହିଁକି କହିଲୁ ?

ମୁଁ କାହା ନାଁ ନ କହିଥିଲେ ଚଳିଥାଆନ୍ତା ହେଲେ ସେ ଗାଡ଼ିଟି ସିଜ୍ ହୋଇ ରହିଥାଆନ୍ତା । ଗାଡ଼ି ସିଜ୍ ହୋଇଥିଲେ ତା' ମାଲିକ ଆପଣଙ୍କୁ ଛାଡ଼ି ନ ଥାନ୍ତା । ଫରେଷ୍ଟ କେଶ୍ ବଡ଼ ଝମେଲା କେଶ୍ । ଦେଖିଲେ ତ ମୋତେ ନେଇ ଜେଲ୍‌ରେ ଠୁଙ୍କି ଦେଲେ, ଯଦି ଆପଣଙ୍କୁ ଜେଲ୍‌ରେ ରଖି ଦେଇଥାଆନ୍ତେ, ତେବେ ଆପଣଙ୍କର ଏ ସରକାରୀ ଚାକିରି କ'ଣ ରହିଥାଆନ୍ତା ? ତା'ପରେ ଆପଣଙ୍କ ମାନ, ଇଜତ ସବୁକିଛି ପାଣିରେ ପଡ଼ିଥାଆନ୍ତା । ମୁଁ ଦେଖିଲି ଏପଟେ ଗାଡ଼ିବାଲା ଓ ସେପଟେ ପୋଲିସ୍‌ବାଲା ଆପଣଙ୍କୁ ହଇରାଣ କରିବେ । ତେଣୁ ବାଧ ହୋଇ ମୁଁ ସେସବୁ ଜିନିଷର ମାଲିକ ବୋଲି କହିଲି । ମୁଁ ତ ଡେଲି ଓ୍ୱେଜ୍‌ରେ ନା ମୋର ଚାକିରି ଯିବାର ଚିନ୍ତା ଥିଲା ନା ମାନଇଜତ ଯିବାର ।

ପର୍ଶୁର ଏ ମହନୀୟତା ଓ ତ୍ୟାଗ କଥା ଭାବି ମୁଁ ଗଭୀର ଅନୁତାପ କଲି ଯେ ଏମିତି ଏକ ବିଶ୍ୱସ୍ତ ଲୋକର ଗ୍ୟାରେଣ୍ଟର ହେବାକୁ ମୁଁ କାହିଁକି କୁଣ୍ଠା ପ୍ରକାଶ କରିଥିଲି । ଏମିତି ଲୋକଟିଏ କ'ଣ ଧୋକ୍କା ଦେଇ ମୋର ଭବିଷ୍ୟତ୍ ପାଇଁ ସଂଚିତ ପୁଞ୍ଜିକୁ ବିପର୍ଯ୍ୟସ୍ତ କରିପାରିଥାଆନ୍ତା ? ମୁଁ କେଉଁ ଭବିଷ୍ୟତ୍ କଥା ଚିନ୍ତା କରି ତା' ପାଇଁ ଗ୍ୟାରେଣ୍ଟର ହୋଇ ନ ଥିଲି ? ଯେଉଁ ଭବିଷ୍ୟତ୍‌କୁ ମୁଁ ଆଦୌ ଦେଖି ନାହିଁ ତ? ପର୍ଶୁ ଯଦି ଏଇ କେଶ୍‌ଟିରେ ମୋ ନାଆଁ ନେଇଥାଆନ୍ତା ତେବେ କ'ଣ ହୋଇଥାନ୍ତା ମୋର ସେ ଭବିଷ୍ୟତ୍‌ର ଅବସ୍ଥା ?

ପର୍ଶୁ ପାଇଁ ଗ୍ୟାରେଣ୍ଟର ହେବାକୁ ମୁଁ ମନେ ମନେ କୁଣ୍ଠା ପ୍ରକାଶ କରି ଥିବାରୁ ଦୁଃଖିତ ହେଲି । ଭାବିଲି, ନା – ତା' ପାଇଁ ମୋତେ କିଛି ଗୋଟାଏ କରିବାକୁ ପଡ଼ିବ । କାଲି ସେ ଘରକୁ ଆସିଲେ ତାକୁ କହିବି ସେ ଆରମ୍ଭ କରୁ କୌଣସି ଏକ ବ୍ୟବସାୟ । ମୁଁ ତୋ ପାଇଁ ଗ୍ୟାରେଣ୍ଟର ହେବି ଓ ତୁ ଭଲରେ ରହିବା ଦେଖିଲେ ଖୁସି ହେବି ।

ପରିଦିନ ସକାଳୁ ପର୍ଶୁ ଘରକୁ ଆସିଲା ବେଳକୁ ମୁଁ ବିଛଣା ଛାଡ଼ି ନ ଥିଲି । ଶୀତ ଦିନ ବୋଲି ରେଜେଇ ତଳେ ଟେଇଁ ଶୋଇଥିଲି । ପର୍ଶୁ ମୋ ସ୍ତ୍ରୀଙ୍କ ସହ କଥା ହେଉଥିଲା - ମାଆ ! ମୁଁ ବୋଧେ ଆଉ ଆପଣଙ୍କ ଘରକୁ ଆସିପାରିବି ନାହିଁ।

ସେ ପଚାରିଲେ କାହିଁକି, କ'ଣ ରାଗିଛୁ କି ?

ରାଗିବି କାହିଁକି ମାଆ, ବେପାରଟିଏ ଆରମ୍ଭ କରିବି ବୋଲି ଭାବିଛି । ଏ କଲେଜ କାମ ଛାଡ଼ି ଦେବି ।

କି ବେପାର ?

ଦୋକାନଟିଏ ଦେବି - କିରାନା ଦୋକାନ ।

ପଇସା କେଉଁଠୁ ଆଣିଲୁ ?

ବ୍ୟାଙ୍କ୍‌ରୁ ଲୋନ୍ ହୋଇଗଲା ।

ତୁ ତ ଆଗରୁ କହୁଥିଲୁ ଗ୍ୟାରେଣ୍ଟର ମିଳୁ ନ ଥିଲା ବୋଲି ଲୋନ୍ ହେଉ ନ ଥିଲା । ଏବେ କେଉଁଠୁ ପାଇଲୁ ଗ୍ୟାରେଣ୍ଟର ?

ଗ୍ୟାରେଣ୍ଟର ଯୋଗାଡ଼ ହୋଇଗଲା ।

କିଏ ହେଲା ?

ମୁଁ ଯାହାଘରେ ଭଡ଼ାରେ ରହୁଛି, ସେହି ଘରବାଲା ବୁଢ଼ା । ତା'ର ଗୋଟିଏ ବୋଲି ପୁଅ, ସେ ବାହାରେ ରହୁଛି । ବୁଢ଼ା ଏଠି ଏକୁଟିଆ । ଆମେ ଦୁଇଜଣ ତା'ର ଦେଖା ଚାହାଁ କରୁଥିଲୁ । ଆମର ଏ ହଇରାଣ ହରକତ ଦେଖି ସେ ତାଙ୍କ ଘର ବନ୍ଧା ଦେଇ ଆମ ପାଇଁ ବ୍ୟାଙ୍କରୁ ଋଣ କରାଇଦେଲେ ।

ଏହି ସମୟରେ ମୁଁ ବିଛଣା ଛାଡ଼ି ଉଠିଆସି ଗୋଟିଏ କୃତ୍ରିମ କ୍ରୋଧ ପ୍ରକାଶ କରି ପର୍ଶୁକୁ କହିଲି ତୁ ମୋତେ ନ କହି ତାକୁ କାହିଁକି କହିଲୁ ?

ପର୍ଶୁ କିଛି ସମୟ ଚୁପ୍ ରହି କହିଲା - ଆମ ଡିପାର୍ଟମେଣ୍ଟର ସମସ୍ତଙ୍କୁ ଥରେ ଥରେ କହିସାରିଥିଲି ସାର୍, କେବଳ ଆପଣଙ୍କୁ ଛାଡ଼ି । ସମସ୍ତେ କିଛି ନା କିଛି ବାହାନା ଦେଖାଇ ମନାକଲେ । ଆପଣଙ୍କୁ କହିଥିଲେ ଆପଣ ଯଦି ମନାକରି ଦେଇ ଥାଆନ୍ତେ ତେବେ ମୋ ନିଜ ଉପରୁ ମୋର ବିଶ୍ୱାସ ତୁଟି ଯାଇଥାଆନ୍ତା । ମୁଁ ଆଉ ବେପାର କରିପାରି ନ ଥାନ୍ତି । ସେହି ବିଶ୍ୱାସକୁ ନ ତୁଟାଇବା ଭୟରେ ମୁଁ ଆପଣଙ୍କୁ କହି ନ ଥିଲି । ଛାଡ଼ନ୍ତୁ ସାର୍, ଗ୍ୟାରେଣ୍ଟର ତ ମିଳିଗଲା, ଏବେ ମୁଁ ଆପଣଙ୍କୁ ଛୋଟିଆ ଅନୁରୋଧଟିଏ କରିବି - ରଖିବେ ?

କ'ଣ ?

ଆଗାମୀ ଗୁରୁବାର ଦିନ ମୋ ଦୋକାନ ଶୁଭାରମ୍ଭ କରିବି ବୋଲି ଭାବିଛି । ମୁଁ ଚାହୁଁଛି ମାଆ ଓ ଆପଣ ଯାଇ ତାକୁ ଉଦ୍‌ଘାଟନ କରିବେ । ଆପଣ ଚାହୁଁଥିବା ମାର୍ଗଟିକୁ ତ ମୁଁ ବାଛିଛି । ଆପଣଙ୍କ ଆଶୀର୍ବାଦ ରହିଲେ ଦୋକାନଟା ଭଲ ଚାଲିବ ।

ମୁଁ ଭାବୁଥିଲି ଯେଉଁ ପର୍ଶୁ ଉପରେ ବିଶ୍ୱାସ କରି ମୁଁ ଗ୍ୟାରେଣ୍ଟର ହେବାକୁ ରାଜି ହେଉ ନ ଥିଲି, ସେ ମୋ ଉପରେ ବିଶ୍ୱାସ ସ୍ଥାପନ କରୁଛି ତା' ଦୋକାନର ଉଦ୍‌ଘାଟନପାଇଁ । ତା'ର ମୋ ଉପରେ ଥିବା ଆସ୍ଥା ଓ ମୋର ତା' ଉପରେ ଥିବା ବିଶ୍ୱାସର ସଂକଟର ଏ ତ ଏକ ରୀତିମତ ପରୀକ୍ଷା ।

ସାର୍, ଯିବେନା ଆପଣ ?

ହଁ - ହଁ - ମୁଁ ନିଶ୍ଚୟ ଯିବି ।

ମୋର ପ୍ରତିଶ୍ରୁତି ପରେ ଦୋକାନ ଖୋଲିବାର ବ୍ୟସ୍ତତା ନେଇ ପର୍ଶୁ ଚାଲିଗଲା । ମୁଁ ଚାହିଁ ରହିଥିଲି ତା'ର ଯିବା ବାଟକୁ । ମୋତେ ଲାଗୁଥିଲା ·ପର୍ଶୁ ଯେମିତି ପଢ଼ି ନେଉଥିଲା ମୋର ବିଶ୍ୱାସର ପରିଭାଷା । ସେଥିପାଇଁ ବୋଧହୁଏ ମୋତେ ଧର୍ମସଂକଟରେ ନ ପକାଇବାପାଇଁ ସେ ମୁହଁ ଖୋଲି ନ ଥିଲା । ନିଜକୁ ଲାଗୁଥିଲା ଖୁବ୍ ଛୋଟ । ନିଜ ଭିତରୁ ନିଜପାଇଁ ଆସୁଥିଲା ଧିକ୍‌କାର । ପାଟିରୁ ଆସିଲା - ଛେଃ !

# ନେପଥ୍ୟର ଦୃଶ୍ୟ

ବହୁତ ଥର ସେ ମୋତେ ଆମନ୍ତ୍ରଣ କରିଛି ତା' ଘରକୁ ଯିବାପାଇଁ, ମାତ୍ର ସାଂସାରିକ ଜଞ୍ଜାଳ ଭିତରେ କେବେ ସୁଯୋଗ ପାଇ ନ ଥିଲି ଯିବାପାଇଁ । ଯୋଗକୁ ଏକ ଅଫିସ୍ କାମରେ ମୋତେ ଖ୍ରିଟିଂ ଯିବାକୁ ପଡ଼ିଲା । ଯିବାର ଯଥେଷ୍ଟ ପୂର୍ବରୁ ମୁଁ ଅନୀଲକୁ ଚିଠି ଲେଖି ଜଣାଇଲି ମୋର ପ୍ରୋଗ୍ରାମ ବିଷୟରେ ଏବଂ ଲେଖିଥିଲି ମୋର ସମସ୍ତ କାର୍ଯ୍ୟସତ୍ତ୍ୱେ ମୁଁ ତା' ଘରେ ଦୁଇଦିନ ରହିବାର ପ୍ରୋଗ୍ରାମ କରିଯାଉଛି ବୋଲି ।

ନିର୍ଦ୍ଧାରିତ ଦିନ ସକାଳୁ ସକାଳୁ ମୁଁ ତା' ଘରେ ପହଞ୍ଚିଥିଲି, ମୋତେ କୁଣ୍ଢାଇ ପକାଇ ବହେ ଶୋଧିଗଲା । ଅବଶ୍ୟ ଏଇଟା ତା'ର ପୁରୁଣା ଅଭ୍ୟାସ ବୋଲି ମୁଁ ଜାଣିଥିଲି । କଲେଜରେ ପଢ଼ିବାବେଳେ କୌଣସି ଦୀର୍ଘ ଛୁଟିରେ ଘରକୁ ଯିବା ପୂର୍ବରୁ ସେ ବାରମ୍ବାର ତାଗିଦ୍ କରି କହିବ— ଚିଠି ଦେବୁ ନଚେତ୍ ମୁଁ ଖୁବ୍ ବୋର୍ ହୋଇଯିବି ଘରେ । ସବୁଥର ପ୍ରତିଶ୍ରୁତି ଦିଏ ସିନା କିନ୍ତୁ କେବେବି ଚିଠି ଦେଇ ପାରେନା । ଛୁଟି ପରେ ଫେରି ମୋତେ ବହେ ଗାଳିକଲେ ମନବୋଧ ହେଲାଯାଏ ତା'ପରେ ସବୁ ଠିକ୍ ଠାକ୍ ହୋଇଯାଏ ।

ଏତେ ବର୍ଷର ବ୍ୟବଧାନ ପରେ ମଧ ଅନୀଲର ସେହି ଏକା ଢଙ୍ଗ । ବାହା ସାହା ହୋଇଛି, ଦୁଇଟି ପିଲାର ବାପ; ମାତ୍ର ତା' ଭିତରେ ଥିବା ସେହି ଛଳ ଛଳ ଭାବପ୍ରବଣ ବ୍ୟକ୍ତିତ୍ୱଟିର କିଛି ବି ପରିବର୍ତ୍ତନ ହୋଇନି ।

ସେ ଗାଳି କରି ଥକିଯିବା ପରେ ମୁଁ କହିଲି— ହେଲା, ଢେର କହିଲୁଣି । ଚାଲ ଏବେ ଘର ଭିତରକୁ । ଘର ଭିତରକୁ ପଶିଯାଇ ତା' ସ୍ତ୍ରୀକୁ ଡାକି କହିଲା, ଦେଖ, ଦେଖ କିଏ ଆସିଛି । ସ୍କ୍ରିନ୍ ଆଢ଼େଇ ପଶି ଆସୁ ଆସୁ ଜଣେ ଅପରିଚିତ ବ୍ୟକ୍ତିଙ୍କୁ ସାମ୍ନାରେ ଦେଖି ପଛକୁ ଫେରିଯାଉଥିଲେ ସେ । ଅନୀଲ କହିଲା— ଆରେ କାହାକୁ ଦେଖି ଫେରିଯାଉଛ ..? ଏ ମୋ ବନ୍ଧୁ, ଖାଲି ବନ୍ଧୁ ନୁହଁ ଶ୍ରେଷ୍ଠ ବନ୍ଧୁ ସ୍ୱରୂପ ପରା ? ବୋଧହୁଏ ମୋ ନାଆଁଟି ସେ ଆଗରୁ ଶୁଣିଥିଲେ, ସଙ୍ଗେ ସଙ୍ଗେ ସ୍କ୍ରିନ୍ ଆଢ଼େଇ ନମସ୍କାରଟିଏ କଲେ ।

ଅନୀଲ୍‌ର ସ୍ତ୍ରୀ ସୁପ୍ରଭାଙ୍କୁ ଦେଖି ମୋତେ ବହୁତ ଖୁସି ଲାଗିଲା । ମୁହଁକୁ ଦେଖିଲେ ଲାଗୁଥିଲା ସକାଳର ତୁଳସୀ ପରି ପବିତ୍ର ପବିତ୍ର । ମୁହଁ ଉପରେ ଲାଖିଯାଉଥିବା ଅମ୍ଳାନ ହସଟି ତାଙ୍କର ସୌନ୍ଦର୍ଯ୍ୟ ଓ ପବିତ୍ରତାକୁ ଆହୁରି ବଢ଼ାଇ ଦେଉଥିଲା ।

ଅନୀଲ ତା' ସ୍ତ୍ରୀଙ୍କୁ କହିଲା - ଆରେ ଖାଲି ଛିଡ଼ା ହୋଇ ରହିଲେ ହେବନି । ଟିକେ ଚା' ଜଲ୍‌ଦି କର । ଇଏ ବେଡ୍ ଟି ଖାଇବା ଲୋକ । ସକାଳ ଆସି କେତେ ହେଲାଣି ଦେଖ । ସାହିତ୍ୟିକ ଲୋକ ତ,ଚା'ରେ ଡେରି ହେଲେ ଅଭିମାନ କରିବ ।

ମୋତେ କହିଲା— ହଉ, ତୁ ଲୁଗାପଟା ବଦଳାଇ ଦେ । ରାତି ଭରି ଜର୍ଣ୍ଣିଂରେ ଭାରି ଖରାପ ଲାଗୁଥିବ । ଚା' ପିଇବା ପରେ ଫ୍ରେସ୍ ହୋଇପଡ଼ିବୁ ।

ମୁଁ କହିଲି - ରହ, ଆଗେ ଚା' ପିଆଯାଉ, ତା'ପରେ ଫ୍ରେସ୍ ହେବି ।

ଚା' ପିଇବା ଅବସରରେ ଅନୀଲ ପଚାରିଲା— ଆଉ ତୋ' ସାହିତ୍ୟର ଖବର କ'ଣ ? ମୁଁ ଏହା ଭିତରେ ତୋ'ର ଅନେକ ଗଳ୍ପ ପଢ଼ିଛି ହେଲେ ମତାମତ ଦେଇପାରିନି । ତୋ' ହାତରେ ପ୍ରେମ ଗଳ୍ପ କିନ୍ତୁ ଏଯାଏଁ ଭଲ ଉତ୍ତୁରୁଛି, ମଝିରେ ମଝିରେ କେତେଗୁଡ଼ିଏ ଟ୍ରାସ୍ ଗଳ୍ପ ମଧ ଲେଖିଛୁ । ଏଥିପାଇଁ ମୁଁ ତୋତେ ଦୋଷ ଦେଉନି । ଏଇଟା ତୋ'ର ବହୁଗଳ୍ପ ପ୍ରସବୀ ହେବାର ଇଚ୍ଛାପାଇଁ ହୋଇଛି । କାରଣ ସେ ଗଳ୍ପଗୁଡ଼ାକ ଉପରେ ତୁ ଭଲ ଭାବରେ କନ୍‌ସେନ୍‌ଟ୍ରେଟ୍ କରିପାରିନୁ । ବେଳେ ବେଳେ ଛୋଟିଆ ବକ୍ତବ୍ୟଟିଏପାଇଁ ମଧ ବିରାଟ କ୍ୟାନ୍‌ଭାସଟିଏ ନେଇଛୁ । ସେ ଯାହାହେଉ ତୁ ଏଯାଏଁ ଲେଖିବା ଫ୍ଲୋ'ଟି ରଖିପାରିଛୁ ସେଇଟା ବଡ଼ କଥା ।

ମୋ କଥା ତ ଖାଲି କହୁଛୁ, ତୋ' ନିଜ କଥା କିଛି କହ ?

ମୋ କଥା ଛାଡ଼, ସବୁ ପତ୍ରିକାର ସମ୍ପାଦକଙ୍କ ଉପରୁ ମୋର ଆସ୍ଥା ତୁଟି ଯାଇଛି । ସେମାନେ କେବଳ ନାଆଁକୁ ମୁଖ୍ୟ କରନ୍ତି, ମ୍ୟାଟର ଗୌଣ । ତା'ପରେ ସାହିତ୍ୟର ଏହି ର୍ୟାଟ୍‌ରେସ୍‌ରେ ମୁଁ ନିଜକୁ ସାମିଲ କରିପାରିଲି ନାହିଁ । ତେଣୁ ନୀରବ ରହିବାକୁ ଭଲ ଭାବିଲି ।

ସୁପ୍ରଭା ଥିଲେ ଥିଲେ ପଦେ ଥଟ୍ଟା କରି କହିଲେ - ନୀରବ ରହିଲ ବୋଲି କାହିଁକି କହୁଛ, କୁହ ସାହିତ୍ୟ ତୁମଦ୍ୱାରା ହେଲା ନାହିଁ । ସାହିତ୍ୟ ଯଦି ସମସ୍ତେ କରିବେ ତେବେ ତମଭଳି ଫାଇଲ୍ ଚାଷ କିଏ କରିବ ? ତମ କିରାଣି ଜୀବନ ଭଲ ତ ତମେ ଭଲ ।

ସୁପ୍ରଭାଙ୍କ ବ୍ୟଙ୍ଗୋକ୍ତିରେ ଅନୀଲ କିଛି ନ କହି ନୀରବ ରହିଲା । ତା'ର ନୀରବତା ଦେଖି ମୁଁ କହିଲି - ତମେ ଜାଣିନ ସୁପ୍ରଭା ! ଅନୀଲର କେତେ ଟ୍ୟାଲେଣ୍ଟ ଥିଲା । ତା' ଭିତରେ ଗୋଟିଏ ଚମତ୍କାର ଗାଳ୍ପିକ ହେବାର ପୋଟେନସିଆଲିଟି ଥିଲା । ସେ ଯଦି ଲେଖିଥାଆନ୍ତା ତେବେ ଆମେମାନେ ତାକୁ ଏଇନେ ହାତ ବଢ଼ାଇ ପାରୁ ନ ଥାନ୍ତୁ । କିନ୍ତୁ ତା'ର ସ୍ୱାଭିମାନ ତାକୁ ନଷ୍ଟ କରିଦେଲା ।

ହେଲେ କିଛି କରିସାରି ତ ସ୍ୱାଭିମାନ କରିପାରିଥାଆନ୍ତେ । କିଛି ନ କରି ମୂଳରୁ ସ୍ୱାଭିମାନ !

ହଁ, ତମେ ଯେଉଁ କଥା କହୁଛ ମୁଁ ଅନେକ ବର୍ଷ ତଳେ ତାକୁ ଠିକ୍ ସେହି କଥା କହୁଥିଲି । ଆରେ ସ୍ୱାଭିମାନ କଲାଭଳି ଆଗ କିଛି ପ୍ରତିଷ୍ଠା ଆଣ । କିଛି ନ କରୁଣୁ ଏ ଦୁର୍ଯ୍ୟୋଧନୀୟ ଭାବ । କିଟ୍‌ସ ତ ପୁଣି ବାରମ୍ବାର ସମ୍ପାଦକଙ୍କଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଥିଲେ, ପରେ ତାଙ୍କୁ ସମୟ ସ୍ୱୀକାର କଲା ନାହିଁ । ସୃଷ୍ଟି କର - କାଳ ଉପରେ ଛାଡ଼ିଦିଅ ତାକୁ ସମୀକ୍ଷା କରିବାକୁ । ମାତ୍ର ସେ କିଛି ବୁଝିଲା ନାହିଁ । ସେମିତି ଅଭିମାନରେ ଆଜିଯାଏ ରହିଗଲା ।

ହଉ ହଉ, ତୁ ଲୁଗାପଟା ବଦଳା । ସେ ସାହିତ୍ୟ ଫାହିତ୍ୟ କଥା ପରେ । ଏତେବର୍ଷ ପରେ ଆସିଛୁ, ଆମେ ଟିକେ ମନଖୋଲି ଗପିବା ।

ହଁ, ଗପିବା ଯେ ! ମୁଁ ମୋ ଅଫିସ୍ କାମଟା ଟିକେ ସାରିଦିଏ । ତା'ପରେ ଗପିବା ।

ପୁଣି ସେହି ଅଫିସ କାମର ନେଠିଆ ରଖି ଆସିଛୁ?

ଆରେ, ଅଫିସ୍ କାମ ଥିଲା ବୋଲି ତ ମୁଁ ଆସିପାରିଲି । ହଉ, ତୁ ବ୍ୟସ୍ତ ହଅନା । ମୋର ମାତ୍ର ସେ ଅଫିସ୍‌ରେ ଘଣ୍ଟାକର କାମ । କାମ ସରିଗଲେ ଆମେ ବୁଲିବା ଓ ଗପିବା । ହଁ, ଆମେ ଆଜି ଖୃଚିଂ ଯିବା । ତୁ ବହୁତ ଥର ସେ ଜାଗା ବିଷୟରେ କହିଛୁ । ସେ ଜାଗାକୁ ଗଲେ କୁଆଡ଼େ କବିତା ଆପେ ଆପେ ଆସିବ । ମୁଁ ଏଠିକାର ଅଫିସ୍‌ରୁ ଗାଡ଼ିଟା ଆଣିବି - ଆମେ ବୁଲିଯିବା । ବାରଟା ଭିତରେ ସମସ୍ତେ ପ୍ରସ୍ତୁତ ଥିବ ।

ମୁଁ ମୋ କାମ ସାରି ଫେରିଲାବେଳକୁ ଅନୀଲ ପ୍ରସ୍ତୁତ ହୋଇ ଅପେକ୍ଷା କରିଥିଲା । ଆମେ ଖିଆପିଆ ସାରି ବାହାରିବା ବେଳକୁ ସୁପ୍ରଭା ମନା କରିଦେଲା ଯିବାପାଇଁ । ଅନୀଲ ବି କହିଲା, ହଉ ସେ ନ ଯାଆନ୍ତୁ - ଆମେ ଫେରିବା ପରେ ଅସୁବିଧା ହେବ । ତା'ପରେ ପିଲାମାନେ ସ୍କୁଲ ଯାଇଛନ୍ତି, ଫେରି ଅସୁବିଧାରେ ପଡ଼ିବେ । ଏମାନେ ଗଲେ ଆମେ ଦୁଇଜଣ କ'ଣ ମନଖୋଲି ଗପିପାରିବା ? ସୁପ୍ରଭାଙ୍କର ଯିବା ପ୍ରସଙ୍ଗକୁ ଅନୀଲ ଏଭଏଡ୍ କରୁଛି ଭାବି ମୁଁ ଆଉ ବାଧ କଲିନି ।

ଖୃଚିଂରେ ଆମେ ଦୁହେଁ ବହୁତ ଗପିଲୁ— ଆମର ଅତୀତ ଓ ବର୍ତ୍ତମାନକୁ ନେଇ । ଅନୀଲ ମୋର ସାମ୍ପ୍ରତିକ ସାମାଜିକ ସ୍ଥିତିକୁ ନେଇ କହିଲା - ତୁ ଆମମାନଙ୍କଠାରୁ ଢେର ଉପରକୁ ଉଠିଗଲୁ । ମୁଁ ବହୁତ ବଡ଼ ବଡ଼ ଆଶା କରି ଶେଷରେ ଏହି କିରାଣି ହୋଇ ରହିଲି । ମୁଁ ତାକୁ ମୋର ଚାକିରି ଓ ଆର୍ଥିକ ସ୍ଥିତି

ବିଷୟରେ କହିଲି । ସବୁ ସ୍ୱଚ୍ଛଳତା ଭିତରେ ମଧ ମୁଁ କାହିଁକି ମାନସିକ ଶାନ୍ତି ପାଇ ପାରୁନି ଚେଷ୍ଟା କରି ମଧ କରିପାରିଲି ନାହିଁ, ହୁଏତ ହୋଇପାରେ ଏତେବର୍ଷ ପରେ ଦେଖାହୋଇଥିବା ବନ୍ଧୁଟି ଆଗରେ ମୁଁ ମୋ ଦୁଃଖର ଶେଷତମ ବିନ୍ଦୁଟିକୁ ନିଗାଡ଼ି ଦେବାର ଆତ୍ମବିଶ୍ୱାସ ଟିକକ ମୋ ଭିତରେ ପାଉ ନ ଥିଲି ।

ଆମେ ଦୁଇଜଣ ଖୁିଚିଂରେ କିଛି ଦେଖିପାରିଲୁ ନାହିଁ । ଏପରି ପରସ୍ପର ଭିତରକୁ ମଧ । ତେଣୁ ବାଟରେ ଫେରିଲାବେଳେ ମୁଁ ଅନୀଲକୁ ପଚାରିଲି—ଏହା ଭିତରେ ସମୟ ଆମକୁ ବାର୍ଦ୍ଧକ୍ୟ ଆଡ଼କୁ ନେଇଗଲାଣି ନା ?

ହଁ, ସେଇଥିପାଇଁ ମୁଁ ଯେଉଁ କଲେଜ ଜୀବନରେ ଖିଚିଂ ତୋତେ ଦେଖାଇବି କହିଥିଲି ଦେଖାଇପାରିଲି ନାହିଁ ।

ଏକ ଅସଫଳ ଯାତ୍ରାରୁ ଫେରିବାପରେ ସୁପ୍ରଭାଙ୍କର ଆନ୍ତରିକ ଆତିଥ୍ୟ ସବୁ ଭୁଲାଇଦେଲା । ମନେ ମନେ ମୁଁ ତାରିଫ୍ କରୁଥିଲି ଅନୀଲ୍‌ର ଚଏସ୍‌କୁ ।

ପରଦିନ ସକାଳୁ ମୁଁ ଉଠିବା ପୂର୍ବରୁ ସୁପ୍ରଭା ଚା' ଧରି ମୋ ବେଡ୍ ପାଖରେ ହାଜର ହୋଇଯାଇଥିଲେ । ସେ ମୋତେ ଡାକିଛନ୍ତି କି ନାହିଁ ମୋର ସ୍ମରଣ ନାହିଁ, ମାତ୍ର ମୁଁ ଆଖି ଖୋଲିବା ବେଳକୁ ସେ ହସ ହସ ମୁହଁରେ ଛିଡ଼ା ହୋଇ କହୁଛନ୍ତି- ଆପଣ ପରା ବେଡ୍ ଟି ପିଅନ୍ତି ?

ଅନୀଲ ?

ସେ ମାର୍କେଟ ଗଲେ ମାଂସ ଆଣିବାକୁ । ଏଠାରେ ଭୋର୍‌ରୁ ନ ଗଲେ ଭଲ ମାଂସ ମିଳେନା ?

ତାକୁ କିଏ କହିଲା ମାଂସପାଇଁ ଯିବାକୁ ?

କିଏ କହିବ କ'ଣ ? କାଲି ତ ଆପଣ ପହଞ୍ଚୁ ପହଞ୍ଚୁ ସେଆଡ଼େ ଗଲେ । ଫେରିଲାବେଳକୁ ତ ରାତି । ମୁଁ ତ ଏକୁଟିଆ, ପିଲା ଦି'ଟା ସାନ ସାନ । କ'ଣ ବା କରିପାରିଥାଆନ୍ତି । କାଲି ରାତିରେ ଆପଣଙ୍କ ଖାଇବା ଭଲ ହୋଇନି ଭାବି ସକାଳୁ ସକାଳୁ ଯାଇଛନ୍ତି ମାଂସପାଇଁ ।

ଚା' କପ୍‌ଟି ସୁପ୍ରଭାଙ୍କ ହାତରୁ ନେଉ ନେଉ ମୁଁ କହିଲି - ତା'ର ପାଗଳାମୀ ଏଯାଏଁ ବି ଯାଇନି ।

ହଉ, ଆପଣ ଚା' ପିଅନ୍ତୁ । ମୁଁ ପାଣି ଟିକେ ରଖିଦିଏ । ଏଠି ସକାଳୁ ମାତ୍ର ଦୁଇଘଣ୍ଟା ପାଣି ଆସୁଛି । ତା'ପରେ ବନ୍ଦ । ପାଣି ନ ଥିଲେ ଗାଧୋଇବାପାଇଁ ପୁଣି ଗୋଟାଏ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିବ ।

ଚା' ପିଇବାର ଅବସର ଭିତରେ ମୁଁ ଚିନ୍ତା କଲି ମୋ ସ୍ତ୍ରୀଙ୍କ କଥା । ବେଡ୍ ଟି ନେବାରେ ମୋର ଅସମ୍ଭବ ଲାଇକିଂ ଜାଣି ମଧ୍ୟ ସେ କେବେ ମୋତେ ବେଡ୍ ଟି କପ୍‌ଟିଏ ଦେଇପାରି ନାହାନ୍ତି । କେବେ ଯଦି ସକାଳୁ କୁତୁରେଇ କୁତୁରେଇ ତାଙ୍କୁ ଉଠାଇ କହେ - ଏ ଉଠ, କପେ ଚା' କର । ସଙ୍ଗେ ସଙ୍ଗେ ମୁହଁ ଆରପଟକୁ ବୁଲାଇ ଶୋଇପଡ଼ି କହନ୍ତି ଅର୍ଦ୍ଦଳିଟିଏ ରଖ । ଆଉ ଯଦି କେବେ ଅତି ବାଧ୍ୟ କରେ, ଉଠି ଚ୍‌' କରନ୍ତି। ତେବେ ତାଙ୍କର ଚା' କପ୍‌ଟି ବଢ଼ାଇଦେବା ମୁହୂର୍ତ୍ତର ମୁହଁଟି ଦେଖିଲେ ଚା' ପିଇବାର ସମସ୍ତ ଆଗ୍ରହ ମରିଯାଏ ।

କାମ କଲାବେଳେ ତାଙ୍କର ଅଭିଯୋଗ ଥାଏ ଯେ ମୁଁ କି ଚାକିରି କରୁଛି ଯେ ତାଙ୍କୁ ସବୁ କାମ ହାତରେ କରିବାକୁ ପଡୁଛି । ତାଙ୍କ ଇଞ୍ଜିନିୟର ବାପାଙ୍କ ଘରେ ଗଣ୍ଡା ଗଣ୍ଡା ଅର୍ଦ୍ଦଳି ଥିଲେ । ପାଣି ଗ୍ଲାସ୍‌ଟିଏ ମଧ୍ୟ ସେ ନିଜେ ଆଣି ପିଇ ନ ଥିଲେ । ମାତ୍ର ଏଠି ଚାକରାଣୀ ପରି ବାସନ ମାଜିବାଠାରୁ ଆରମ୍ଭ କରି ସବୁକାମ କରିବାକୁ ପଡୁଛି ।

ପ୍ରଥମେ ପ୍ରଥମେ ତାଙ୍କର ଅଭିଯୋଗ ନ ଥିଲା । ଭାବୁଥିଲି ହଁ କିଛି କାମ କରିବାରେ ଅଭ୍ୟସ୍ତ ନୁହଁ ତ ଧୀରେ ଧୀରେ ହୋଇଯିବ । କିନ୍ତୁ ଅଭିଯୋଗ କ୍ରମେ କ୍ରମେ ଅସନ୍ତୋଷରେ ପରିଣତ ହେଲା ଏବଂ ଅସନ୍ତୋଷ ରୂପାନ୍ତରିତ ହୋଇଗଲା ଅସହଯୋଗକୁ । ସାହିତ୍ୟର ପରିଧିରେ ଜୀବିକାକୁ ଗୌଣ କରି ଜୀବନ ଖୋଜୁଥିବା ଗୋଟେ ଲୋକର ଆତ୍ମିକ ଭାବପ୍ରବଣତାକୁ ସେ ମୋଟେ ଛୁଇଁପାରିଲେ ନାହିଁ । ଯାହା ଫଳରେ ମୁଁ ଦିନକୁ ଦିନ ଅନୁଭବ କଲି - ମୋ ସ୍ୱପ୍ନର ଘୁଡ଼ିଆର ବାଉଁଶକୁ ସବୁ ଘୁଣକାଟି ନଷ୍ଟ କରି ଚାଲିଛନ୍ତି ।

ମୁଁ ଚା' ପିଇସାରିଲା ବେଳକୁ ଅନୀଲ ଆସି ପହଞ୍ଚିଗଲା । ମୋ ବିଛଣା ପାଖରେ ଖାଲି କପ୍‌ଟିକୁ ଦେଖି କହିଲା - ଥ୍ୟାଙ୍କ୍ ଗଡ୍ । ତୋତେ ତା'ହେଲେ ବେଡ୍ ଟି କପ୍‌ଟେ ମିଳିଛି ।

ମୁଁ କହିଲି ମାନେ - ସୁପ୍ରଭାଙ୍କ ଭଳି ବନ୍ଧୁପତ୍ନୀ ଥାଉଁ ଥାଉଁ ବେଡ୍ ଟି କପ୍‌ଟେ ମିଳି ନ ଥାନ୍ତା ନା କ'ଣ ?

ଅନୀଲ କେବଳ ନୀରବ ହସଟିଏ ହସିଲା ।

ମାର୍କେଟରୁ ଆଣିଥିବା ଜିନିଷ ସବୁ ସୁପ୍ରଭାଙ୍କ ହାତକୁ ବଢ଼ାଇଦେଇ ସୋଫା ଉପରେ ବସିପଡ଼ିଲା ଅନୀଲ । ବସିପଡ଼ି ମୋତେ ପଚାରିଲା - ତୋର ବର୍ଷା ମହାପାତ୍ର କଥା ମନେପଡ଼େ ?

ହଁ, ମନେପଡ଼େ । ଛଅଟି ଅକ୍ଷରର ବର୍ଣ୍ଣାଳୀଟିଏ ପରି ।

ପ୍ରେମିକାକୁ ବାହାହୋଇ ନ ପାରି ତୋର କିଛି ଅବସୋସ୍ ଅଛି ?

ବାହା ହୋଇ ନ ପାରି ତ ଅବସୋସ୍ ଅଛି - ହୃଦୟ ଭିତରେ କେଉଁଠି ମକଚି ଯାଇଥିବା ଅବସୋସ୍ ପରି । କିନ୍ତୁ ହୋଇଥିଲେ ଆହୁରି ବଡ଼ ଅବସୋସ୍ ବୋଧେ ରହିଥାଆନ୍ତା । ସେଇଟା କ'ଣ ଜାଣୁ ? ସବୁ ପୂର୍ଣ୍ଣତା ଭିତରେ ସାହିତ୍ୟ ପାଇଁ ଗୋଟେ ଶୂନ୍ୟ କ୍ଷତି ହୋଇଯାଇଥାନ୍ତା । ଅନ୍ତତଃ ତାକୁ ନ ପାଇପାରିବାର ଅବସୋସ୍ ଟିକକ ଅଛି ବୋଲି ଏଯାଏଁ ମୋ କଲମ ସୃଷ୍ଟିକ୍ଷମ ଅଛି । ସେ ଆଜିଯାଏ ମୋ ଭିତରକୁ ପ୍ରେମିକାର ଇମେଜ୍ ନେଇ ଆସୁଛି । ଯଦି କୌଣସି ମୁହୂର୍ତ୍ତରେ ସ୍ତୀର ଇମେଜ୍ ନେଇ ପଶିଆସେ ମୁଁ ଅଣନିଃଶ୍ଵାସୀ ହୋଇପଡ଼େ ।

ସୁପ୍ରଭା ପଶିଆସି କହିଲେ— କ'ଣ ଏମିତି ଗପ ଚାଲିଥିବ ? ମୁଁ ଜଳଖିଆ ପ୍ରସ୍ତୁତ କରିସାରିଲିଣି । ସେପଟେ ପାଣି ବି ବନ୍ଦ ହୋଇଯିବ, ଗାଧୋଇ ପଡ଼ନ୍ତୁ ।

ଅନୀଲ ବି କହିଲା - ଆରେ, ହଁ ଉଠ୍ ଉଠ୍ । ଗାଧୋଇ ପାଧୋଇ ଜଳଖିଆ ଖାଇସାରିବା ପରେ ଯାଇ ଗପ ହେବା ।

ମୋର ଦୁଇଦିନ ରହଣି ଭିତରେ ମୁଁ ଅନୁଭବ କଲି ଅନୀଲ ଗୋଟାଏ ସୁଖୀ ଗୃହସ୍ଥ । ସୁପ୍ରଭା ଭଳି ସ୍ତୀ ଯା'ର ଥିବ ଆର୍ଥିକ ଅସହାୟତା ତାକୁ ଦୁଃଖ ଦେଇ ପାରିବ ନାହିଁ । ଅଫିସ୍‌ରୁ ଘରକୁ ଫେରିବା ପରେ ଅନ୍ତତଃ ଅନୀଲ ତା' ସ୍ତୀର ହସିଲା ମୁହଁଟିକୁ ଦେଖି ଭୁଲିଯାଉଥିବ ଦୁଃଖ । ଦୈନ୍ୟ ତାକୁ ଦୁଃଖୀ କରିପାରୁ ନ ଥିବ ବରଂ ଦୁଃଖ ତା' ପାଖରେ ଦୈନ୍ୟ ହୋଇଯାଉଥିବ ।

ସୁପ୍ରଭାଙ୍କର ପ୍ରତିଟି କାର୍ଯ୍ୟକଳାପକୁ ଲକ୍ଷ୍ୟ କରି ମୋ ଭିତରକୁ ଗୋଟେ ତୁଳନାତ୍ମକ ଭାବ ଚାଲିଆସେ ମୋ ସ୍ତୀଙ୍କୁ ନେଇ । ମୁଁ ଭାବେ ବୋଧେ ପୃଥିବୀର ସର୍ବଶ୍ରେଷ୍ଠ ଦୁଃଖୀ ଲୋକଟିଏ ହେଉଛି ମୁଁ ।

ଦୁଇଦିନ ରହିବା ଭିତରେ ଅନେକ ଥର ଚେଷ୍ଟା କରିଛି ମୋ ଦୁଃଖକୁ ଅନ୍ତତଃ କିଛିଟା ଅନୀଲ ପାଖରେ କହିବି । କହିଦେଲେ ଦୁଃଖ କିଛି ହାଲ୍‌କା ହୋଇଯିବ । ମାତ୍ର ସବୁଥର ତଣ୍ଟି ପାଖରେ କଣ୍ଟା ଅଟକିବା ପରି ଅଟକିଯାଏ ଦୁଃଖ । ଏମିତି ଦୁଇଦିନ ଚାଲିଗଲା ପରେ ମୁଁ କିଛି କହିପାରିଲିନି ଅନୀଲ୍‌କୁ ।

ଫେରିବା ଦିନ ସକାଳୁ ବସ୍‌ଷ୍ଟାଣ୍ଡକୁ ଆସିବାପାଇଁ ଅନୀଲ୍ ରିକ୍‌ସା ଡାକୁଥିଲା । ମୁଁ ମନା କରି କହିଲି—ନା, ଏତିକି ବାଟ ଚାଲି ଚାଲି ଗପି ଗପି ଯିବା । ବାଟରେ ଚାଲୁ ଚାଲୁ ଅନୀଲ୍ କହିଲା - ଜୀବନ ଦୃଷ୍ଟିକୋଣରୁ ସାରାଜୀବନପାଇଁ ମୁଁ ନିଃସ୍ୱ ହୋଇଗଲି ସ୍ୱରୂପ ! ମୋତେ ଯଦି ଟିକିଏ ଜୀବନ ମିଳିଥାଆନ୍ତା ମୋର ଆର୍ଥିକ ଅସହାୟତା କଲମକୁ ଆହୁରି ଜୋର୍‌ରେ ଧରି ସାହିତ୍ୟ କରିବାକୁ ପ୍ରେରଣା ଦେଇଥାଆନ୍ତା ।

ମୁଁ କିଛି ସମୟ ଅନୀଲ୍‌ର ମୁହଁକୁ ବୋକାପରି ଚାହିଁଲି । ତା'ପରେ କହିଲି ସୁପ୍ରଭା ଭଳି ସ୍ତ୍ରୀ ପାଇ ତୁ ତ ଜୀବନ ଦୃଷ୍ଟିରୁ ଦୈନ୍ୟ ନୁହେଁ । ଏସବୁ ତୋର ଛଳନା ।

ଏ ମୋର ଛଳନା ନୁହେଁରେ, ତୁ ଯାହା ସବୁ ଦେଖିଲୁ ଏ ଅଭିନୟ । ତୋ ଆସିବାର ଚିଠି ପାଇବା ପୂର୍ବରୁ ମୁଁ ସୁପ୍ରଭାକୁ ବହୁତ ଅନୁରୋଧ କରିଥିଲି - ମୋର ବନ୍ଧୁ ବହୁ ଦିନ ପରେ ମୋ ପାଖକୁ ଆସୁଛି । ଅନ୍ତତଃ ଏଇ କେତେଦିନ ତମେ ଟିକେ ହସ, ଆନ୍ତରିକତା ଦେଖାଅ । ସେ ଯେମିତି ଆମ ଭିତରର ମନର ବ୍ୟବଧାନକୁ ଦେଖି ନ ପାରେ । ଅନେକ ଅନୁରୋଧ ପରେ ତୁ ଯାହା ଦେଖିଲୁ ସେ ଥିଲା ସୁପ୍ରଭାର ଅଭିନୟ । ତୋର ରହଣିରେ ତା' ଭିତରେ ବଢୁଥିବା ଦୁଃଖର ଚାରୋଟିକୁ ଦୁଇଦିନ ପାଇଁ ଶୋଇଯାଇଥିଲା । ସେତକ ପୁଣି ବହୁ ବାଧବାଧକତାରେ ।

କିନ୍ତୁ ସୁପ୍ରଭା କ'ଣ ପାଇଁ ଦୁଃଖୀ ?

ଅବଶ୍ୟ ସୁପ୍ରଭାର ଏ ଦୁଃଖ ପାଇଁ ମୁଁ ମଧ ଦାୟୀ । ମୋର ପ୍ରଥମ ଭୁଲ୍ ହେଲା ଘର ପ୍ରସ୍ତାବରେ ରାଜି ହୋଇ ସୁପ୍ରଭା ଭଳି ଏକ ଧନୀ ଘରର ଝିଅକୁ ବାହା ହେବାକୁ ରାଜି ହେଲି । ଅବଶ୍ୟ ସେତେବେଳେ ବିଭିନ୍ନ ବଡ଼ ବଡ଼ ଚାକିରିପାଇଁ ପରୀକ୍ଷା ଦେଉଥାଏ । କାଳେ କିଛି ଗୋଟାଏ ହୋଇଯିବ ଏ ଭରସାରେ ସେମାନେ ବାହାଘର କରିଦେଲେ । ମାତ୍ର ବାହାଘର ପରେ ବୟସ ସରିଗଲା । କିଛି ହୋଇପାରିଲା ନାହିଁ । ତା'ପରେ ଧୀରେ ଧୀରେ ଆରମ୍ଭ ହେଲା ସୁପ୍ରଭାର ଅସନ୍ତୋଷ । ଯେଉଁ ଅସନ୍ତୋଷ ଏଇନେ ମୋର ସମଗ୍ର ପାରିବାରିକ ଜୀବନକୁ ବିପର୍ଯ୍ୟସ୍ତ କରିପକାଉଛି । ଏପରିକି ଏମିତି ଏକ ପାରିବାରିକ ବ୍ୟବସ୍ଥା ଭିତରେ ମୋ ପିଲାମାନଙ୍କ ଭିତରେ ମଧ ଗୋଟେ ଇନ୍‌ଫିଓରିଟି କଂପ୍ଲେକ୍‌ସ ବଢ଼ିଗଲାଣି । ମୁଁ ପ୍ରତି ମୁହୂର୍ତ୍ତରେ ମୋ ପରିବାରକୁ ନେଇ ଥକିପଡୁଛି, ଅଣନିଃଶ୍ୱାସୀ ହୋଇପଡୁଛି । ମୁଁ ଏକା ଏକା ମୋ ପରିବାର ସହିତ କେବଳ ଆଡ୍‌ଜଷ୍ଟ କରୁନି ଜୀବନ ସହ ମଧ ଆଡ୍‌ଜଷ୍ଟ କରୁଛି ।

ଅନୀଲ୍‌ର କଥା ଶୁଣିସାରି ମୁଁ ଭାବୁଥିଲି ତାକୁ କହିବାପାଇଁ । ଆମେ ଦୁଇଜଣ ଗୋଟିଏ ନୌକାରେ । ଦୁଃଖର ଅଜଗର ମୋତେ ପ୍ରତି ମୁହୂର୍ତ୍ତରେ ଗିଳି ଚାଲିଛି । ମୁଁ ଜୀବନ ସହ କେବଳ ସାଲିସ୍ କରୁଛି, ସାଲିସ୍ । ମାତ୍ର କିଛି କହିବା ପୂର୍ବରୁ ମୋ ସହରକୁ ଯାଉଥିବା ଗାଡ଼ିଟି ବାହାରି ସାରିଥିଲା । ତରତରରେ ବସ୍ ଉପରକୁ ଉଠି ଯାଉ ଯାଉ କହିଲି - ଜୀବନଟା ବୋଧହୁଏ ଏମିତିରେ ଅନୀଲ୍, ଜୀବନଟା ବୋଧହୁଏ ଏମିତି !

# ଆବେଗ ଅନ୍ୱେଷା

ସେ ବର୍ଷ ଆମ ସାହିର ଖୁଦୁରୁକୁଣୀ ଓଷେଇତୀମାନଙ୍କପାଇଁ ଥିଲା ସତେ ଯେମିତି ସୁବର୍ଣ୍ଣ ବର୍ଷ । ଆମ ସାହିର ନିରୁଦେଈର ବାହାଘର ଠିକ୍ ଆଷାଢ଼ ମାସରେ ସରିଥାଏ । ଆମ ସାହିର ପରମ୍ପରା ଅନୁଯାୟୀ ଯେଉଁ ଖୁଦୁରୁକୁଣୀ ଓଷେଇତୀ ବାହା ହୋଇଯିବ ସେ ସେବର୍ଷ ଓଷାପାଇଁ କିଛି ଆର୍ଥିକ ସାହାଯ୍ୟ ଦେବ । ସେ ଅର୍ଥାତ୍, ତା' ବର । ବାହାଘର ପରର ପଖାଳଖିଆ ସରୁ ସରୁ ସାହିର ଝିଅମାନେ ଭିଡ଼ ଜମାଇ ଦିଅନ୍ତି ବର ପାଖରେ ଓଷା ଖର୍ଚ୍ଚପାଇଁ । ଝିଅମାନଙ୍କର ଦାବି ଅନୁଯାୟୀ ସବୁ ବରମାନେ ଯେ ମନଖୋଲା ଟଙ୍କା ଦିଅନ୍ତି ସେ କଥା ନୁହଁ । କେତେକ ମକ୍ଷୀଚୁସ୍ ତ ଥାଆନ୍ତି କହିବେ ଆମେ ତ ବରବେଶରେ ଆସିଥିଲୁ ପକେଟ୍‌ରେ କ'ଣ ପଇସା ଧରିଛୁ, ବାପାଙ୍କୁ କୁହ ସେ ଯାହା ଦେବେ । ଝିଅମାନେ କିନ୍ତୁ ବରର ବାପ ପାଖକୁ ଯାଆନ୍ତିନି ଓଲଟି ବରକୁ ବାଧ୍ୟ କରନ୍ତି ତାଙ୍କ ବାପାଙ୍କୁ ଦାବି ବିଷୟରେ ଜଣାଇବାପାଇଁ । ବରମାନଙ୍କର ବାପା ବି ଅଦାଭାଇ ଶୁଣ୍ଠି । ଦଶ ପନ୍ଦରରୁ ଆରମ୍ଭ କରି ଶୂଳି ଚଢ଼ିବା ପରି ପଚାଶ ପାଖରେ ପହଞ୍ଚିବେ ଯେ ଆଉ ସେଠୁ ହଲଚଲ ହେବେ ନାହିଁ । ଆମ ପକ୍ଷର ମୁରବିମାନେ ହସ୍ତକ୍ଷେପ କରି କହିବେ ସେମାନେ ଖୁସିରେ ଯାହା ଦେଉଛନ୍ତି ରଖିନିଅ - ଏତେ ଅଝଟ କାହିଁକି ।

ମାତ୍ର ନିରୁଦେଈର ବରଟା ଥିଲା ସଂପୂର୍ଣ୍ଣ ଓଲଟା । ରାଉରକେଲା ଷ୍ଟିଲ ପ୍ଲାଣ୍ଟରେ ଚାକିରି କରୁଥିଲା - ଯେମିତି ସୁନ୍ଦର, ସେମିତି ଉଦାର, ରସିକ ଓ ହାତଖୋଲାବାଲା । ଝିଅମାନେ ତାଙ୍କ ପାଖକୁ ଯେତେବେଳେ ଦଳବଦ୍ଧ ହୋଇ ଗଲେ ସେ ତାଙ୍କ ସାଙ୍ଗମାନଙ୍କ ଗହଳରେ ବସିଥିଲେ । ଦଳବଦ୍ଧ ଝିଅଙ୍କୁ ଦେଖି ତାଙ୍କର ସାଙ୍ଗ ଜଣେ କିଏ ଚିହାଇ ଦେଲା, ଆସିଗଲେରେ କୁଆ ପଲ, ଏବେ ଆକ୍ରମଣପାଇଁ ପ୍ରସ୍ତୁତ ହୋଇଯାଅ ।

ସେ ରସିକତା କରି ପଚାରିଲେ— ତମେମାନେ ଯେମିତି ଦଳବଦ୍ଧ ହୋଇ ଆସିଛ, କୌଣସି ଟ୍ରେଡ ୟୁନିୟନର ଦାବିପତ୍ର ଧରି ଆସିବା ପରି ଲାଗୁଛି ।

ଦୁଇବର୍ଷ ତଳୁ ଗାଆଁ ହାଇସ୍କୁଲରୁ ମ୍ୟାଟ୍ରିକ ପାସ୍ କରି ଘରେ ବସିଥିବା ଶୋଭାନାନୀ ଆହୁରି ରସିକତା କରି କହିଲା- ହଁ ପ୍ଲାଣ୍ଟ ଚାକିରି ତ, ଟ୍ରେଡ ୟୁନିୟନ ସହ ଭଲ ସଂପର୍କ ଥିବ । ବଞ୍ଚିବାର ଗୋଟିଏ ପଥ - ଲଢ଼େଇ ଆଉ ଧର୍ମଘଟ, ସ୍ଲୋଗାନ ଦେଇ ଦେଇ ତଣ୍ଟି ଫାଟି ଯାଇଥିବ । ତେଣୁ ଯାହାକୁ ଦେଖିଲେ ଟ୍ରେଡ ୟୁନିୟନ ବୋଲି ଭାବିବନି ତ ଆଉ କ'ଣ ଭାବିବ । ହଉ ଯଦି ଭାବିଲେ ଭଲ କଥା - ଆମେ ସବୁ ଖୁଦୁରୁକୁଣୀ ଓଷେଇତୀ ଟ୍ରେଡ ୟୁନିୟନର ସଦସ୍ୟା ।

ଖାଲି ସଦସ୍ୟା- ନେତା କେହି ନାହାନ୍ତି ?

ହଁ ନେତା ଅଛନ୍ତି ଯେ ସେ ଏବେ ବଧୂବେଶରେ, ଆମେ ତାଙ୍କୁ ଏବେ ରାଉରକେଲା ପଠାଉଛୁ କିଛି ନାଲାୟକମାନଙ୍କର ନେତୃତ୍ୱ ନେବାପାଇଁ । ତେଣୁ ସେ ଆସି ପାରିଲେନି ।

ଓହୋ - ବଡ଼ ଦୁଃଖିତ ଆମେମାନେ । ନେତାଙ୍କ ବିନା ତମେମାନେ ବଡ଼ ଅସହାୟା ହୋଇପଡ଼ିବ ନୁହେଁ ?

ଶୋଭାନାନୀ ତା'ର ପ୍ରତ୍ୟୁତ୍ପନ୍ନମତି ଦେଖାଇ କହିଲା - ଆପଣ ପରା ଉତ୍କଳର ବାସୀ, ଜାଣି ନାହାନ୍ତି କି - ଉତ୍କଳେ ନେତାର ନାହିଁ ପ୍ରୟୋଜନ, ଉତ୍କଳର ନେତା ସ୍ୱୟଂ ନାରାୟଣ ।

ତେବେ ତମମାନଙ୍କର ଦାବି କ'ଣ ?

ଦାବି ଖୁବ୍ ମାମୁଲି, ମାତ୍ର ପୂରଣ ନ ହେଲେ ଧର୍ମଘଟ ବି ହୋଇପାରେ ।

ନା - ନା ଆମେ ଶ୍ରମିକବର୍ଗର ଲୋକ, ଆମପରି ଅନ୍ୟ ଶ୍ରମିକବର୍ଗର ଲୋକଙ୍କର ଦାବି ପ୍ରତି ଆମେ ସମ୍ବେଦନଶୀଳ ।

ନା - ଆମେମାନେ ଶ୍ରମିକ ନୋହୁଁ - ମାଲିକ ।

ହଉ ଦାବିଟା ତେବେ କ'ଣ ?

ତା' ପରେ ସବୁଝିଅଙ୍କ ମଧ୍ୟରେ ଆରମ୍ଭ ହୋଇଗଲା ଚିମୁଟା ଚିମୁଟି - ତୁ କହ - ତୁ କହ ବୋଲି ।

ସେ ଏମାନଙ୍କ ହାବଭାବ ଦେଖି ପୁଣିଥରେ ରସିକତା କରି କହିଲେ - କ'ଣ ଦାବି ଏ ପର୍ଯ୍ୟନ୍ତ ନିଷ୍ପତ୍ତି ହୋଇପାରିନି ନା କ'ଣ ?

ଶୋଭାନାନୀ କହିଲା - ଆମର ଦାବି ଏ ବର୍ଷର ଖୁଦୁରୁକୁଣୀ ଓଷା ଖର୍ଚ୍ଚ ।

ଓହୋ- ଇଏ ତ ଏକ ବିରାଟ ଦାବି । ହଉ କେତେ ଦେଲେ ଚଳିବ ?

ଆପଣ ଯେତେ ଦେବେ ?

ନା - ତମେମାନେ ତ ପୁଣି କେତେ ଗୋଟାଏ ପାଇବାର ଆଶା ରଖି ଆସିଥିବ ନା ।

ଯିଏ ଯେତେ ଦେଲା ଆମେ ଖୁସିରେ ନେଉ ।

ତେବେ ମୋଠାରୁ କେତେ ପାଇଲେ ତମେ ଖୁସି ହେବ ? ସମବେତ ଝିଅମାନଙ୍କ ମଧ୍ୟରେ ପୁଣି ଚିମୁଟା ଚିମୁଟି ଲାଗିଥିବ - ତୁ କହ - ତୁ କହ ।

ଏତେ ବ୍ୟସ୍ତ କାହିଁକି ତମେମାନେ, ହିସାବ କରି ଓ ଚିନ୍ତା କରି ଆସି କୁହ ।

ଏହି ସମୟରେ ବରକୁ ସରବତ୍ ପିଆଇବାକୁ ଆସୁଥିବା ଆମ ଜେଜୀମାଆ କହିଲା - ଆଲୋ ଝିଅମାନେ ! କ'ଣ ଚିନ୍ତା କରିବାକୁ ପଡୁଛି କି ?

ଆମ ଓଷା ଖର୍ଚ୍ଚ କେତେ ହେବ - ଇଏ ଗୋଟିଏ କଥା । ଏଥିରେ ହିସାବ ନିକାଶ କ'ଣ, ବରପିଲା ଯାହା ଖୁସିରେ ଦେବେ ନେବ ।

ଶୋଭାନାନୀ ଚଟାପଟ କହିଲା - ଦରଦାମ ଛିଣ୍ଡା ଛିଣ୍ଡି କଲାପରି ଆମେ ଗୋଟେ କହିବୁ କ'ଣ, ଆପଣ ଖୁସିରେ ଯାହା ଦେବାର ଅଛି ଦିଅନ୍ତୁ ।

ବରପିଲା ସଙ୍ଗେ ସଙ୍ଗେ ତାଙ୍କର ଜଣେ ସାଙ୍ଗଙ୍କୁ କହିଲେ - ମୋ ଆଟାଚିରେ ଗୋଟେ ହ୍ୟାଣ୍ଡବେଗ୍ ଅଛି, ଦେଲୁ । ସେଥିରୁ ସେ ଖଡ଼ଖଡ଼ିଆ ପାଞ୍ଚଟା ଶହେଟଙ୍କିଆ ନୋଟ୍ ବାହାର କରି କହିଲେ— ମୁଁ ଭାବିଥିଲି ଓଷା ଖର୍ଚ୍ଚ ସଂପୂର୍ଣ୍ଣ ଦେଇଦେବାକୁ । ଯେହେତୁ କେତେ ଖର୍ଚ୍ଚ ହେବ ତମେମାନେ କହିପାରିଲ ନାହିଁ, ମୁଁ ଏତକ ଦେଉଛି । ଶୁଣ - ଯଦି ଓଷାରେ ଅଧିକ ଖର୍ଚ୍ଚ ହୁଏ ତେବେ ମୋତେ ଜଣାଇଲେ ମୁଁ ଅବଶିଷ୍ଟ ଟଙ୍କା ପଠାଇଦେବି ।

ସେତେବେଳେ ଏକାବେଳେ ପାଞ୍ଚଶହ ଟଙ୍କା ଚାନ୍ଦା ଦେଖି ଝିଅମାନଙ୍କର ଆଖି ଖୋସି ହୋଇଯାଇଥିଲା । ସେମାନେ କେବେବି ଆଶା କରି ନ ଥିଲେ ଯେ ଏକାବେଳେ ଏତେ ଟଙ୍କା ଚାନ୍ଦା ମିଳିବ ବୋଲି । ତେଣୁ ସେମାନଙ୍କ ଖୁସି କହିଲେ ନ ସରେ । ଆସିଲା ବେଳେ ଜଣେ କେବଳ ମୃଦୁ ପ୍ରଶଂସା ପଦିଏ କରିଥିଲା - ଆମ ନିରୁଦେଇଟା ଭାରି କପାଳିଆ ।

ପୂଜା ମେଢ଼ ଓ ଭୋଜିଭାତ ପାଇଁ ପାଞ୍ଚଶହ ଟଙ୍କା ହିଁ ଯଥେଷ୍ଟ ଥିଲା । ତେଣୁ ସମସ୍ତେ ଓଷାଟିକୁ ଜାକଜମକରେ ପାଳନ କରିବାକୁ ପ୍ରସ୍ତୁତ ହେଉଥିଲେ । ମେଢ, ମାଇକ୍ ଓ ବାଜାବାଲା ବରାଦଠୁଁ ଭୋଜିଭାତ ଯାଏଁ ଲିଷ୍ଟ ରେଡି ହୋଇଗଲା । ଯୋଗକୁ ଆମ ସାନଦାଦା· ସେହି ସମୟରେ ନୂଆ ଚାକିରି ପାଇ ଘରକୁ ଆସିଥାଆନ୍ତି । ତାଙ୍କ ଚାକିରି ଖୁସି ଯୋଗୁଁ ଝିଅମାନେ ତାଙ୍କୁ ଅଳି କଲେ - ଏଥର ପୂଜାପାଇଁ ଆମର ସବୁ ପ୍ରସ୍ତୁତି ହୋଇଯାଇଛି । କେବଳ ଗୋଟିଏ କଥା ବାକି ଅଛି ସେଇଟା ତମେ ପୂରଣ କରିଦିଅ ତମ ଚାକିରି ଖୁସିରେ ।

କ'ଣ ?

ଭାଲୁକୁଣୀ ବିସର୍ଜନ ଦିନ ନାବକେଳିଟେ କରିବାକୁ ଭାବିଛୁ । ସେହି ଖର୍ଚ୍ଚଟା ତମେ ଦେଇଦିଅ ।

ଦାଦା ମନେ ମନେ ହିସାବ କରିନେଲେ ଖର୍ଚ୍ଚ । ତା'ପରେ କହିଲେ ଠିକ୍ ଅଛି, ନାହା ଭଡ଼ା ନାଉରିଆ ଇତ୍ୟାଦିଙ୍କର ଖର୍ଚ୍ଚ ମୋର ।

ମେଢ଼ ବିସର୍ଜନ ଦିନ ନାବକେଳି କେଉଁ ନଦୀରେ ହେବ ତା'ପାଇଁ ଦେଖା ଦେଲା ଭିନ୍ନମତ । ଦଳେ ଝିଅ କହୁଥାଆନ୍ତି କାଣୀ ନଦୀରେ ଯିବାପାଇଁ ତ ଆଉ

ଦଳେ କହୁଥାଆନ୍ତି ଖରସ୍ରୋତାରେ ଯିବାପାଇଁ । କାଣୀନଦୀ ଯିବାପାଇଁ କହୁଥିବା ଝିଅମାନଙ୍କର ଯୁକ୍ତି ଥିଲା—ଯେହେତୁ କାଣୀନଦୀ ଅଣଓସାରିଆ ଓ ନଦୀ କୂଳେ କୂଳେ ବେଶି ଗାଁଗଣ୍ଡା ଅଛି, ନାବକେଳିରେ ମଜା ଆସିବ । ଖରସ୍ରୋତା ନଦୀ ସିନା ଓସାରିଆ ହେଲେ କୂଳରେ ଗାଆଁ କାହିଁ ? ଗୋଟିଏ ପଟ ତ ପୂରା ଫାଙ୍କା, ଆରପଟରେ ଠାଏ ଠାଏ ଗାଆଁ ପଡ଼ିବ ଯେ ହେଲେ ନଦୀକୂଳରୁ ଗାଆଁଗୁଡ଼ିକ ଏତେ ଦୂରରେ ଯେ ଦେଖିବା ଦୂରର କଥା, ଆମ ନାଆ ବି ଦେଖାଯିବ ନାହିଁ ।

ଖରସ୍ରୋତା ଯିବାପାଇଁ ଚାହୁଁଥିବା ଝିଅମାନଙ୍କର ଯୁକ୍ତି ହେଲା - ଆମେ ନିଜର ଆନନ୍ଦପାଇଁ ନାବକେଳିରେ ଯାଉଛନ୍ତି । କିଏ ଦେଖିବା ନ ଦେଖିବା ସହ ଆମର କି ସଂପର୍କ । ଭରା ଖରସ୍ରୋତାର ଛାତି ଉପରେ ତଳମୁହଁ । ନାଆ ଭାସି ଭାସି ଗଲେ ଯେଉଁ ଆନନ୍ଦ ମିଳିବ ନାଆ ଆଡ଼କରି ଦେଲେ ଏ କୂଳ ସେ କୂଳ ଲାଗି ଯାଉଥିବା କାଣୀ ନଦୀରେ ଗଲେ ସେ ଆନନ୍ଦ କ'ଣ ମିଳିବ ?

ଝିଅମାନଙ୍କର ଯୁକ୍ତିରେ କୌଣସି ନିଷ୍ପତ୍ତି ହୋଇପାରୁ ନ ଥିବା ବେଳେ ମୋ ବୋଉ ହସ୍ତକ୍ଷେପ କରି କହିଲା - ଖରସ୍ରୋତାର ଗଲେ ମଜା ଆସିବ । ଗଲା ବେଳେ ମଙ୍ଗ ସଳଖି ବସିଗଲେ ତ ଡଙ୍ଗା ଭାସି ଭାସି ଚାଲିଯିବ । ଉଠିଲା ବେଳକୁ ନଦୀ କଡ଼େ କଡ଼େ ଟାଣି ଆଣି ହେବ । ଆଉ କିଏ କହୁଛି ଖରସ୍ରୋତାର କୂଳେ କୂଳେ ଗାଆଁ ନାହିଁ ବୋଲି । ତମ ଗାଆଁଠୁ ମୋ ବାପଘର ଯାଏଁ ତ ନଦୀ କୂଳେ କୂଳେ ଗାଆଁ ଲାଗିରହିଛି ନା ।

ଜଣେ କିଏ ପଚାରିଲା - ଆମେ କେତେ ବାଟ ଯିବା କି ?

ଯାଉନ ଆମ ଗାଆଁ ଯାଏ - କେତେ ବାଟ କି ଏମିତି । ଗଲାବେଳକୁ ତ କିଛି ନାହିଁ, ଆସିଲା ବେଳକୁ ଯା' ସମୟ ଟିକେ ଲାଗିବ ।

ତା'ପରେ ସମସ୍ତେ ରାଜି ହୋଇଗଲେ ଖରସ୍ରୋତାରେ ନାବକେଳି ହେବ ଏବଂ ମୋ ବୋଉକୁ ବାଧ୍ୟ କଲେ ଯେହେତୁ ନାବକେଳି ତମ ଗାଆଁ ଯାଏଁ ଯିବ ତମେ ବି ଆମ ସାଙ୍ଗରେ ଯିବ ।

ମୋର କ'ଣ ଯିବାପାଇଁ ଇଚ୍ଛା ନାହିଁ କି ହେଲେ ମୋ ଯିବାଟା କ'ଣ ମୋ ଅଧୀନରେ ? ମୁଁ କ'ଣ ଆଉ ଝିଅ ଅଛି ?

ତମ ଯିବାର ଅନୁମତି ଅଣାଇବା ଦାୟିତ୍ୱ ଆମର । ବୋଉକୁ ଅନୁମତି ମିଳିଥିଲା ନାବକେଳିରେ ଯିବାପାଇଁ, ମାତ୍ର ଗୋଟିଏ ସର୍ତ୍ତରେ । ସର୍ତ୍ତଟି ଥିଲା ସେ ଯେମିତି ତାଙ୍କ ଗାଆଁରେ ଓହ୍ଲାଇ ତାଙ୍କ ଘରକୁ ନ ଯାଏ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ମୋ ମାମୁଘର ବାଡ଼ି ଖରସ୍ରୋତା ନଦୀକୁ ଲାଗିଥିଲା ଓ ତାଙ୍କ ବାଡ଼ିରେ ହିଁ ଗୋଟେ ତୁଠ ଥିଲା ଗାଧୁଆ ପାଧୁଆ କରିବାପାଇଁ ।

ବୋଉ ଉପରେ ଏ ସର୍ତ୍ତ ଆରୋପର କାରଣ ଥିଲା ମୋ ଜେଜୀ ଯାହାର କି କୌଣସି ପୂଜାପର୍ବର ଭାରବେଭାର ନେଇ ମୋ ଅଜାଙ୍କ ସାଙ୍ଗରେ ମନୋମାଳିନ୍ୟ ହୋଇଥିଲା ।

ତଥାପି ବୋଉ ସେ ସର୍ତ୍ତରେ ରାଜି ହୋଇ ନାବକେଳିରେ ଗଲା ।

ମାମୁଘର ଗାଆଁ ଆରମ୍ଭ ହେବା ଆଗରୁ ବୋଉ ଆଖିରେ ଧୀରେ ଧୀରେ ଲୁହ ଜକାଇ ଆସୁଥିଲା ।

ବୋଉର ଦିଅର ହିସାବ ଲାଗୁଥିବା-ଯୋଗୀଦାଦା କହିଲେ— ହଇରେ ନୂଆ'ଉଙ୍କ ଗାଆଁ ଆସିଗଲା ବୋଲି ତାଙ୍କର କାନ୍ଦ ଆରମ୍ଭ ହୋଇଗଲାଣି ।

ସମସ୍ତେ ଚାହିଁଲେ ବୋଉଆଡ଼େ । ବୋଉ ତା'ର ଲୁହ ଲୁଚାଇବାକୁ ଚେଷ୍ଟା କରୁ କରୁ ଟିକିଏ ଜୋର୍‌ରେ କାନ୍ଦି ପକାଇଲା ।

ସମସ୍ତେ ଅନୁଭବ କରୁଥିଲେ ବୋଉ ମନର ଦୁଃଖକୁ ହେଲେ କେହି ସାହସ କରି କହିପାରୁ ନ ଥିଲେ - ଠିକ୍ ଅଛି, ତମେ ତମ ଘରକୁ ଯିବ ବୋଲି ।

ମାମୁଘର ବାଡ଼ି କଡ଼ରେ ନାଆ ଯିବା ବେଳକୁ ଆମର ଅଜା ଗାଧୋଇକି ଉଠୁଥିଲେ । ଅଜାଙ୍କୁ ଦେଖି ଦେଇ ବୋଉ ଆଉ କୋହ ସମ୍ଭରଣ କରି ନ ପାରି ଜୋର୍‌ରେ କାନ୍ଦିବା ଆରମ୍ଭ କରିଦେଲା । ଯଦିଓ ମୁଁ ସେତେବେଳେ ପିଲା ଥିଲି ତଥାପି ଏତେ ଲୋକଙ୍କ ଆଗରେ ବୋଉ କାନ୍ଦୁଥିବାରୁ ମୋ ଆତ୍ମସମ୍ମାନକୁ ଭାରି ବାଧୁଥିଲା ।

ଅଜା ନାଆଆଡ଼କୁ ଦେଖୁ ଦେଖୁ ସବୁ ଚିହ୍ନା ମୁହଁକୁ ଦେଖି ପକାଇଲେ । ବୋଉର କାନ୍ଦଣାକୁ ବାରି ପକାଇ କୋହମିଶ୍ରିତ ସ୍ୱରରେ ପଚାରିଲେ - ମୋ ଲଖ୍ମୀ କିରେ ?

ତା' ପରେ ତ ଆରମ୍ଭ ହୋଇଗଲା ଗୋଟେ ଲହରୀ କାନ୍ଦଣାର ଧ୍ୱନି । ବୋଉର କାନ୍ଦଣା ଦେଖି ସମସ୍ତେ ନିଷ୍ପତ୍ତି ନେଲେ ଡଙ୍ଗା ଟିକେ କୂଳରେ ଲଗାଇ ଦେବା ଏବଂ ମୋ ବୋଉ ଅଳ୍ପ ସମୟପାଇଁ ଓହ୍ଲାଇ ଯିବ ଏବଂ ଡଙ୍ଗାରେ ଡଙ୍ଗାରେ ବସିଥିବା କୌଣସି ଲୋକ ଏ ବିଷୟରେ ଯେମିତି ଆମ ଘରେ ନ କୁହନ୍ତି ଏଇ ତାଗିଦ୍ ବି ଦିଆଗଲା ।

ବୋଉ ଡଙ୍ଗାରୁ ଓହ୍ଲାଇ ଯାଇ ଅଜାଙ୍କୁ ଧରି ବାହୁନା ପାରି କାନ୍ଦିଲା । ଅଜା କୋହରେ ଆତ୍ମାମାତ୍ରା ହୋଇପଡ଼ୁଥିଲେ ମଧ୍ୟ ବୋଉକୁ ତୁନି କରୁଥିଲେ ଓ କହୁଥିଲେ ଛି- ମୋ ମାଆଟା ପରା ! କାନ୍ଦନା, ତୁ କ'ଣ ଭାବିଛୁ ତୋ ଶାଶୂ କଥାକୁ ମୁଁ ଗଣ୍ଠି କରି ବସିଛି । ମୁଁ ଝିଅ ଦେଇଛି ପରା- ମୁଁ କେମତି ତାଙ୍କ କଥାରେ ରାଗିବି । ଏବେ ଧାନ ବଛାବଛି ଚାଲିଥିଲା । ସରିଥିଲେ ମୁଁ ଯାଇଥାଆନ୍ତି ଲୋ ।

ବୋଉର କାନ୍ଦଣା ଶୁଣି ମୋ ଆଈ, ମାଇଁ ଇତ୍ୟାଦି ନଈକୂଳକୁ ଚାଲି ଆସିଲେ । ତା'ପରେ ଆରମ୍ଭ ହୋଇଗଲା ସ୍ତ୍ରୀଲୋକମାନଙ୍କର ଏକ ସମବେତ କାନ୍ଦଣାର ସ୍ୱର । ଅଜା କହିଲେ- ଆରେ ଇଏ କ'ଣ ଚାଲିଛି, ତମେମାନେ ସମସ୍ତେ ଏମିତି କାନ୍ଦୁଥିବ ନା, ସମସ୍ତଙ୍କପାଇଁ କିଛି ଜଳଖିଆ ବ୍ୟବସ୍ଥା କରିବ ।

ହଠାତ୍ ମୋ ଆଈ ଓ ମାଇଁ କାନ୍ଦଣା ବନ୍ଦକରି ବ୍ୟସ୍ତ ହୋଇପଡ଼ିଲେ ଏତେ ଲୋକଙ୍କପାଇଁ କ'ଣ ଜଳଖିଆ ବନ୍ଦୋବସ୍ତ କରିବେ।

ଡଙ୍ଗାରେ ବସିଥିବା ଲୋକମାନେ ତାଙ୍କୁ ବାଧ୍ୟ କରି ମନାକଲେ— ନା- ନା, ଜଳଖିଆ ଫଳଖିଆ କିଛି ବନ୍ଦୋବସ୍ତ କରିବା ଦରକାର ନାହିଁ । ଆମେ ନାବଜେଲିରେ ଆସିଥିଲୁ- ନୂଆଉଙ୍କର ବ୍ୟସ୍ତତା ଦେଖି ଟିକେ ଓହ୍ଲାଇଦେଲୁ । ସେ ଭେଟାଭେଟି ହୋଇଗଲେ, ଆମେ ଏବେ ଏଇଠୁ ଫେରିବୁ, ଜଳଖିଆ ଫଳଖିଆ ଯୋଗାଡ଼ କରିବା ଦରକାର ନାହିଁ । ଆମେ ପରା ନାଆରେ ନାହେ ଲୋକ ।

ଅଜା କହିଲେ—କ'ଣ ହେଲା ସେଠୁ । ଭଲ ହୋଇ ନ ପାରିଲେ ଅଳ୍ପ ବହୁତ ଯା' ଯୋଗାଡ଼ ହୋଇପାରିବ ଦେବୁ । ଅଜା କାହାରି କଥା ନ ଶୁଣି ବରାଦ କଲେ ଯାଆ--ଚୁଡ଼ାଘଷା, କ୍ଷୀର ଓ ଗୁରିଆ ସାହୁ ଘରୁ ମିଠା ମଗାଇ ଆଣ ।

କାହାରି ନାହିଁ ନାହିଁ ରହିଲା ନାହିଁ- ସମସ୍ତଙ୍କ ପାଇଁ ଜଳଖିଆ ଆସିଲା ଓ ସମସ୍ତେ ଜଳଖିଆ ଖାଇ ସେଠାରୁ ନାଆ ଫେରାଇଲୁ ।

ଫେରିଲା ବେଳକୁ ସମସ୍ତେ କୁହାକୁହି ହେଉଥିଲେ—ଝିଅମାନଙ୍କପାଇଁ ବାପଘରର ମୋହ ସବୁଠୁଁ ଅଧିକ । ଶାଶୁଘରେ ଯେତେ ଥାଉ ବାପଘରେ ପହଞ୍ଚିଗଲେ ଶାଶୁଘରର ଥିବା ପଣ ତୁଛ ଲାଗେ ।

ପିଲାଟି ଦିନରୁ ମୁଁ ଦେଖି ଆସିଥିଲି ବୋଉର ବାପଘରକୁ ଯିବାର ଆଗ୍ରହ ଓ ଆଗଭରପଣ । ବହୁ ବର୍ଷ ଯାଏ ରଜ, କୁମାର ପୂର୍ଣ୍ଣିମା, ବାହାଘର ସାହାଘର ହେଲେ ସବାରି ଆସି ଆମ ଦୁଆରେ ଲାଗିଯାଉଥିଲା । ମୁଁ ବି ବୋଉ ସାଙ୍ଗରେ ଅନେକଥର ସବାରିରେ ବସି ମାମୁଘରକୁ ଯାଇଛି । ଗାଆଁ ଭିତରେ ଯିବାବେଳେ ମଝିରେ ମଝିରେ ମୁଁ ସବାରିର କବାଟ ଖୋଲିଦିଏ ବାହାରକୁ ଦେଖିବାପାଇଁ । ବୋଉ ମୋତେ ଆକଟ କରି କହେ- ରହ, ତମ ଗାଆଁ ପରା ଯାଇନି । ପରେ ପରେ ବୋଉ ଯେମିତି ପୁରୁଣା ହୋଇଗଲା -ସବାରିରେ ଯିବାକୁ ତାକୁ ଆଉ ଭଲ ଲାଗିଲା ନାହିଁ, ତେଣିକି ମାମୁମାନେ ଗୋଟେ ରିକ୍ସା ପଠାଇଦିଅନ୍ତି ଯିବାପାଇଁ, ମାତ୍ର ବୋଉ ଯେତେ ପୁରୁଣା ହେଉଥିଲେ ମଧ୍ୟ ବାପଘରକୁ ଯିବାର ଆଗ୍ରହ ତା'ର କମି ନ ଥିଲା ଶେଷ ପର୍ଯ୍ୟନ୍ତ ।

ମୋର ଅବଚେତନ ମନରେ ବୋଉର ବାପଘର ଯିବାର ଆଗ୍ରହ ଓ ମୋହ ରହିଯାଇଥିଲା । ତେଣୁ ମୋର ବାହାଘର ପରେ ମୋ ପତ୍ନୀ ଯେତେବେଳେ ତାଙ୍କ ବାପଘରକୁ ବୁଲି ବାହାରନ୍ତି ମୁଁ ମନା ନ କରି ନେଇଯାଏ। ଧୀରେ ଧୀରେ ଏମିତି ହୋଇଗଲା ଯେ ଆମେ ଯେତେବେଳେ ଗାଆଁକୁ ବୁଲିଯାଉ ଅନ୍ତତଃପକ୍ଷେ ଦିନେ କି ଦୁଇଦିନର ପ୍ରୋଗ୍ରାମ ଥାଏ ଶଶୁରଘରେ । ଅବଶ୍ୟ ମୋ ସ୍ତ୍ରୀଙ୍କୁ ତାଙ୍କ ଘରକୁ ଯିବାପାଇଁ ଡକରା ଆସେନି କି ଯିବାପାଇଁ ସବାରି ଆସେନା । କେତେବେଳେ ମଟରସାଇକେଲରେ ତ କେତେବେଳେ କାର୍‌ରେ ଆମେ ଚାଲିଯାଉ । ଆମର ଏମିତି ଚାଲିଯିବାଟାକୁ ଆମର ନୈତିକ କର୍ତ୍ତବ୍ୟ ଧରିନେଇ ଶଶୁରଘରର ଲୋକେ କେବେ ବୋଧେ ଉପଲ୍‌ବ୍‌ଧି କରି ନାହାନ୍ତି ଆମକୁ ସାଦର ନିମନ୍ତ୍ରଣ ଜଣାଇ କୌଣସି ସମୟରେ ଡାକିବାର ଆବଶ୍ୟକତା ରହିପାରେ ବୋଲି ।

ମୋ ସାନଶଳାର ବାହାଘର ପୂର୍ବରୁ ଆମକୁ ଟେଲିଫୋନ କରି ଜଣାଇ ଦିଆଗଲା ଯେ ଅମୁକ ଦିନ ବାହାଘର ହେଉଛି ଆସିବାପାଇଁ ।

ଟେଲିଫୋନ ପାଇବା ପରେ ପତ୍ନୀ କହିଲେ କ'ଣ କରିବା ? ମୁଁ କହିଲି ମୋର ସାଂପ୍ରତିକ ବ୍ୟସ୍ତତା ଭିତରେ ତମମାନଙ୍କୁ ଧରି ଯିବା ସମ୍ଭବ ନୁହେଁ। ତମେ ବରଂ ଟେଲିଫୋନ କରିଦିଅ କେହି ଆସି ତମକୁ ଧରି ଯାଆନ୍ତି, ମୁଁ ଚତୁର୍ଥୀ ବେଳକୁ ଯାଇ ପହଞ୍ଚିବି ।

ସେ କଥା ତାଙ୍କ ଘରକୁ ଜଣାଇବା ବେଳେ ସେମାନେ କହିଲେ— ତମପାଖକୁ ଏତେ ଦୂରକୁ ଯିବାପାଇଁ କିଏ ଅଛି, ତମେମାନେ ଯେମିତି ଚେଷ୍ଟା କରି ଚାଲିଆସ ।

ଏକଥାଟା ମୋ ସ୍ୱାଭିମାନକୁ କ୍ଷୁଣ୍ଣ କଲା, ମୁଁ ଭାବିଲି ବାହାଘର ତାଙ୍କର ଅଥଚ ସେମାନଙ୍କୁ ସମୟ ନାହିଁ ଆସି ଝିଅକୁ ନେବାପାଇଁ । ମୁଁ ଏଠି ବୋଧେ ବେକାରିଆ ଲୋକଟେ ବସିଛି ସେମାନେ ଆସି କହିଲେ ମୁଁ ଦୌଡ଼ି ଧାଇଁ ପହଞ୍ଚି ଯିବି ।

ପତ୍ନୀଙ୍କୁ ମୋର ମନୋଭାବ, ଅସୁବିଧା ଏବଂ ଆମର ଯିବାଟାକୁ ସେମାନେ ଏମିତି ଗୌଣ ମନେ କରିବାର କାରଣ କହିଲି, ସେ ମୋ ମନୋଭାବକୁ ଠିକ୍ ଭାବେ ବୁଝିପାରି କହିଲେ—ଠିକ୍ ଅଛି, ସେମାନଙ୍କର ଯଦି ସମୟ ନାହିଁ, ତେବେ ଆମର ବି ଯିବାର ନାହିଁ । କଙ୍କଡ଼ାକୁ ଗୋଳିଆ ପାଣି ସୁହାଇବା ଭଳି ତାଙ୍କର ଏ ଦୃଢ଼ମନ ମୋତେ ବି ସୁହାଇଲା । ତେଣୁ ଆପାତତଃ ବାହାଘରକୁ ଯିବାର ପ୍ରୋଗ୍ରାମ ଆମେ ବନ୍ଦ କରିଦେଲୁ ।

ବାହାଘର ଦିନ ସକାଳୁ ସକାଳୁ ସେ ବଡ଼ ବିଷଣ୍ଣ ହୋଇଗଲେ । କଥା କଥାକେ ଚିଡ଼ି ଉଠିଲେ । ତାଙ୍କର ଚିଡ଼ିବା ଦେଖି ମୁଁ ଟିହାଇଲା ଭଳି ପଦେ କହି ଦେଲି—ଆଜି ଭାଇ ବାହାଘର ତ ଭୋଜିଭାତ କଥା ମନରେ ପଡ଼ିଯାଉଛି କି ?

ବାସ୍ - ତା'ପରେ ଆଉ ସମ୍ଭାଳେ କିଏ ? ଆରମ୍ଭ ହୋଇଗଲା ଗୋଟେ କାନ୍ଦଣାର ଲହରୀ ।

ମୁଁ ତାଙ୍କୁ ବୁଝାଇବାକୁ ଯାଇ କହିଲି- ଏବେବି ସମୟ ଅଛି, ଚିନ୍ତା କରି ଯଦି କଥା କହିବ ତେବେ ମୁଁ କିଛି ଗୋଟେ ବ୍ୟବସ୍ଥା କରିବି ।

ସେ କିଛିକ୍ଷଣ ତାଙ୍କର କାନ୍ଦ ବନ୍ଦ କରି ଚିନ୍ତା କଲେ । ତା'ପରେ କହିଲେ ମୁଁ କ'ଣ କହୁଥିଲି କି- ଆମର ରାଗ ଅଭିମାନ ତ ପରେ ଶୁଝାଇପାରିବା । ଢେର ବେଳ ମିଳିବ, ହେଲେ ମୋ ଭାଇଟା କ'ଣ ଆଉ ଥରେ ବାହାହେବ ?

ସେକଥା ତ ତମେ ଆଗରୁ କହିପାରିଥାଆନ୍ତ ? ମୁଁ ମନେ ମନେ ଗୋଟେ ଜିଦ୍ କରୁଥିଲି ଯେ ହେଲେ ଆଜି ମନକୁ ବୁଝାଇ ପାରୁନି ।

ହଉ ବାହାର ।

ସେ ବାହାରୁଥିଲେ ବାପଘର, ତାଙ୍କର ତରବର ହୋଇ ଜିନିଷ ସଜଡ଼ା ସଜଡ଼ି କରିବା ଦେଖି ମନେପଡ଼ିଯାଉଥିଲା ପିଲାବେଳେ ନାବକେଳିରେ ଦେଖୁଥିବା ବୋଉର ବ୍ୟଗ୍ର ଭାବ । ମୁଁ ମନେ ମନେ ଭାବୁଥିଲି ବାପଘରକୁ ଯିବାପାଇଁ ପ୍ରତ୍ୟେକ ଝିଅଙ୍କ ଭିତରେ ଏକ ଅଦ୍‌ଭୁତ ଆବେଗ ରହିଛି ନା । ସେ ଆବେଗର ଆକର୍ଷଣ କ'ଣ ସ୍ମୃତିର ଅନ୍ୱେଷା ନା ଆତ୍ମୀୟତାର ପରିଭାଷା ?

# ବେୱାରିସ୍

ଯେତେ ମନା କଲେ ବି ମାନିଲା ନାହିଁ ପିଲାଟା । ତା'ର ଏକା ଜିଦ୍ ଥିଲା ଚାକିରି କରିବ । ଚାକିରି ବା ବାକିରି କର, ଆମେ କାହିଁକି ମନା କରିବୁ । ଆମର କୋଉ ଛଅଟା କି ନଅଟା ପିଲା । ତୁ ତ ଗୋଟିଏ, ଯାହା କରିବୁ ଏଇଠି ଥାଇ କର । ଏଇଠି ଚାକିରି ବାକିରି ଦେଖ୍- ଯଦି ମିଳିଗଲା ତ ଭଲକଥା, ନଚେତ୍ ମୋ ବେଉସାରେ ଲାଗିଯିବୁ । ମାନୁଛି ତୁ ପାଠ ଦି'ଅକ୍ଷର ପଢ଼ିଛୁ । ମେଟ୍ରିକ୍ ପର୍ଯ୍ୟନ୍ତ ଯାଇଛୁ- ବନ୍ଧଟା ଡେଇଁପାରିଲୁନି ସିନା ହେଲେ ମୋର ତ ସାହସ ଥିଲା ତତେ କଲେଜରେ ପଢ଼ାଇବାପାଇଁ । ଆଜିକାଲି ତ କାହିଁ କେତେ କେତେ ପାଠ ପଢ଼ି ପିଲାମାନେ ବୁଲୁଛନ୍ତି । ବୁଲି ବୁଲି ଥକ୍କା ହୋଇ ଆସି ରିକ୍ସା ଟାଣୁଛନ୍ତି । ମୁଁ ତ ତୋତେ କହୁନି- ତୁ ମୋ ବେଉସାରେ ପଶି ରିକ୍ସା ଟାଣ ବୋଲି । ମୋର ତ ଆଶା ତୁ ମୋଠାରୁ ଉପରକୁ ଯାଆ । ସେଥିପାଇଁ ତ ଯେଉଁ ବ୍ୟାଙ୍କବାଲାଙ୍କ ଝିଅକୁ ମୁଁ ସ୍କୁଲ ନବା ଆଣିବା କରୁଛି, ତାଙ୍କୁ କହିଛି ତୋ' ନାଆଁରେ ଗୋଟେ ଅଟୋ ଲୋନ୍ କରାଇ ଦେବାକୁ ।

ମୋ କଥା ଶୁଣୁ ଶୁଣୁ ସେ ଚିହିଁକିଉଠି କହିଲା- ମୋତେ ସେ ରିକ୍ସା କିମ୍ବା ଅଟୋ ଚଳାଇବା କଥା କହିବନି ବାପା । ତମର ତ ଜୀବନ ଗଲା ସେହି ପୁରୁଣା ବଜାର, ଚନ୍ଦନ ବଜାର, ଷ୍ଟେସନ ବଜାର ଓ କଚେରି ହୋଇ ହୋଇ । ଖଟିବା ଓ ଖାଇବା ଛଡ଼ା ଆମେ କ'ଣ ଯାଇପାରିଲେ ପାଦେ ଆଗକୁ ? ସେ ଖାଇବା କଥା ବି ଛାଡ଼- କେବଳ ବଞ୍ଚିବାପାଇଁ । ଦିନେ କାଳେ ସଉକ୍‌ରେ ଭଲ ମନ୍ଦ ନାହିଁ । ମୁଁ ଚାହୁଁନି ପୁଣି ସେହି ଶଗଡ଼ଗୁଳାରେ ପଶି ଘାଣ୍ଟି ହେବାପାଇଁ ।

ମୁଁ ଚୁପ୍- ଭାବିଲି ପୁଅ ବି ସତ କହୁଛି । ଏଇଟା ଗୋଟାଏ କି ଜୀବନ । ଖଟିଲେ ଖାଅ ନଚେତ୍ ଉପାସ । ଭଲମନ୍ଦରେ, ପୂଜାପାର୍ବଣରେ ଦିନେ ହାତ ଖୋଲି ଖର୍ଚ୍ଚ କରିବାର ସାମର୍ଥ୍ୟ ନ ଥିବ । କାଳୀପୂଜା ବେଳେ ଏ ସହର ଯେତେବେଳେ ଉଠୁଥିବ ପଡୁଥିବ, ତମେ ତମ ପିଲାଛୁଆଙ୍କ ସଉକ କଥା କ'ଣ ଦେଖିବ, ଲୋଭ କରି ଧାଉଁଥିବ କିଛି ଅଧିକା କମାଇବାକୁ, ହେଲେ ହୋଇଛି କ'ଣ ? ସବୁବେଳେ ତ ସେହି ଠୋ-ଠା-ଠି । ପୁଅ ଯଦି ଏ ଜୀବନରୁ ମୁକୁଳିବାର ସ୍ୱପ୍ନ ଦେଖୁଛି, ଦେଖୁ । ତାକୁ କାହିଁକି ଅଟକାଇବି ।

ପୁଅ କିଛି ଦିନ ବୁଲିଲା ଏପଟ ସେପଟ- କହିଲା ଚାକିରି ଖୋଜୁଛି । ଫେକର ଗଲା ବାରମ୍ବାର । ସେଠୁ ନିରାଶ ହେଲା । ଜିନ୍ଦଲ ଗଲା, ସେଠି ବି ସେଇ

କଥା । ପାରାଦ୍ୱୀପ ଆଡ଼େ ଯାଇ ଚକ୍କର କାଟି ଆସିଲା । ସବୁଠି ନିରାଶ ହେବା ପରେ ନିନ୍ଦିଲା ଭାଗ୍ୟକୁ । କହିଲା ଭାଗ୍ୟରେ ବୋଧେ ରିକ୍ସା ଟଣା ଯୋଗ ଅଛି । ମୁଁ ତାକୁ ଆଶ୍ୱାସନା ଦେଇ କହିଲି—ଘର ଚଳାଇବା ଚିନ୍ତା ତ ତୋ ମୁଣ୍ଡରେ ନାହିଁ। ମୋ ବାହୁରେ ବଳ ଓ ଗୋଡ଼ରେ ଦମ୍ ଥିବାଯାଏ ସେ ଦାୟିତ୍ୱ ମୋର । ତୁ ଲାଗ୍-ଆହୁରି ଚେଷ୍ଟା କର । ଭାଗ୍ୟରେ ଥିଲେ କିଛି ଗୋଟାଏ ମିଳିଯିବ ।

ସେ ତା'ର ବିଫଳତାକୁ ଲୁଚାଇପାରୁ ନ ଥିଲା ସତ, ହେଲେ ମୋ କଥା ଉପରେ ଏତେଟା ଗୁରୁତ୍ୱ ଦେବା ପରି ଲାଗୁ ନ ଥିଲା । ସକାଳୁ ସକାଳୁ ବାହାରିଯାଏ ଘରୁ । ତା' ମାଆ ଯଦି କେବେ ପଚାରିଦିଏ- ତୁ ସବୁଦିନ ସକାଳୁ କୁଆଡ଼େ ବାହାରିଯାଉଛୁ, ସେ ଫଅଁ କରି କହେ— କ'ଣ ଗୋଟେ ନିର୍ଦ୍ଦିଷ୍ଟ ଜାଗାକୁ ଯାଉଛି ଯେ ତୋତେ କହିକରି ଯିବି । ମୁଁ ଚାକିରି ବାକିରିପାଇଁ ଚେଷ୍ଟା କରୁଛି, ଚାରିଆଡ଼କୁ ତ ମୋତେ ଯିବାକୁ ପଡ଼ିବ ।

କେଉଁଠି ଚେଷ୍ଟା କରୁଛୁ?

ଏଠି ତ ସବୁ କମ୍ପାନୀ ମନାକଲେ । ଗୋଟିଏ ଲୋକ ସହ ଯୋଗାଯୋଗ କରୁଛି । ସେ କହିଛି ସୁରାଟ୍ ନେଇଯିବ ବୋଲି ।

କେବେ ?

ଠିକ୍ କରି କ'ଣ କହିହେବ । କହିଛି ତ କାଳୀପୂଜା ପରେ ।

ସତକୁ ସତ କାଳୀପୂଜା ପରେ ସେ ବାହାରି ପଡ଼ିଲା ସୁରାଟ । ପୂଜାପାଇଁ ଭଲ ଦି' ପଇସା ବି କମାଇ ହୋଇଥିଲା । ଘରୁ ବାହାରିବା ବେଳେ ବାଟଖର୍ଚ୍ଚ ଛାଡ଼ି ଟଙ୍କା ପାଅାଁଶ ବି ଦେଲି ହାତରେ । ମାଆ ତା'ର ବାରମ୍ବାର ତାଗିଦ୍ କରି କହିଲା- ବିଦେଶ ଜାଗା, ଠିକ୍‌ରେ ଚଳିବୁ । ଯାଇ ପହଞ୍ଚି ଚିଠି ଦେବୁ । ନଚେତ୍ ତୋ' ସେହି ସାଙ୍ଗ ବୁଥ୍‌ବାଲାକୁ ଫୋନ୍ କରି ଖବର ଦେବୁ ।

ମାଆ କଥା ମାନି ଭଲରେ ପହଞ୍ଚିଲା ବୋଲି ଖବର ଦେଲା । ତା' ମାଆ ମନ ଆଶ୍ୱସ୍ତ ହେଲା । କିଛିଦିନ ପରେ ପୁଣିଥରେ ଖବର ଦେଲା ଗୋଟେ କପଡ଼ା ମିଲ୍‌ରେ ଚାକିରି ପାଇଗଲା ବୋଲି । ମାଆ ତା'ର ରକ୍ଷାକାଳୀଙ୍କୁ କୋଟି କୋଟି ପ୍ରଣାମ କରି ଭୋଗ ଲଗାଇଲା । ମୁଁ ବି ଖୁସି ହେଲି, ଯାହାହେଉ ପୁଅ ତା'ର ବାଞ୍ଛିତ ଲକ୍ଷ୍ୟକୁ ପାଇପାରିଲା ବୋଲି ।

କିଛି ମାସ ପରେ ପୁଅ ଚିଠି ଦେଲା । ଡାକବାଲାଠାରୁ ଚିଠି ନେବା ପରେ ତା' ମାଆର କାନ୍ଧରେ ଯେମିତି ଡେଣା ଲାଗିଯାଇଥିଲା । ଦଉଡ଼ି ଦଉଡ଼ି ଯାଇ ଡାକିଆଣିଲା ଆମ ବସ୍ତିର ଗୋଟେ ସ୍କୁଲପଢୁଆ ପିଲାକୁ । ତା' ପାଇଁ ଖଟିଆଟେ

ପକାଇଦେଇ କହିଲା ପଢ଼ି ଦେଏନିରେ ବାପ, କ'ଣ ସବୁ ଲେଖିଛି ପୁଅ । ଚିଠି ପଢ଼ା ସମୟତକ ଭାଗବତ ଶୁଣିବା ପରି ସେ ହାତଯୋଡ଼ି ମାଆ ରକ୍ଷାକାଳୀଙ୍କୁ ଜୁହାର ହେଉଥାଏ ।

ପୁଅ ଲେଖିଥିଲା - ଘର ଚଳାଇବାପାଇଁ ଦରକାର ହେଲେ ସେ ଟଙ୍କା ପଠାଇବ । ସିଏ ତ ସିଧାସଳଖ ମୋତେ ଚିଠି ଲେଖେନା । ମାଆକୁ ତା'ର ଲେଖିଥିଲା, ବାପାଙ୍କୁ କହିବୁ ଆଉ ହାଡ଼ଭଙ୍ଗା ଖଟଣି ଖଟିବେ ନାହିଁ । ଖରାବର୍ଷାରେ ଦେହକୁ ଚାହିଁ ଯେତିକି ସମ୍ଭବ ସେତିକି ରିକ୍‌ସା ଟାଣିବେ । ଚିଠି ଶୁଣିଲାବେଳେ ତା'ର ମାଆ ଖାଲି ଉଡୁଥାଏ ଭିତରେ ଭିତରେ । ଈଶ୍ୱରଙ୍କୁ ପ୍ରାର୍ଥନା କଲା, ତା'ର କୋଟି ପରମାୟୁପାଇଁ । ମୋତେ ତାଗିଦ୍ କଲା ପରି କହିଲା - ଏବେ ଦେହ ମୁଣ୍ଡକୁ ଚାହିଁ ରିକ୍‌ସା ଟାଣ । ଯାହାପାଇଁ ତ ଦୌଡୁଥିଲ ସିଏତ କୂଳରେ ଲାଗିଗଲା । କିନ୍ତୁ ଖବରଦାର, ତାକୁ ଏବେ ଟଙ୍କାପଇସା ପଠାଇବା କଥା କହିବନି । ନୂଆ ନୂଆ ରୋଜଗାର କରୁଛି, ସିଏ ତା'ର ସଉକ ମେଣ୍ଟାଇସାରୁ । ଆମର ଦୁଇଟା ପେଟକୁ କ'ଣ ତମ ରୋଜଗାର ନିଅଣ୍ଟ ହେଉଛି ଯେ ତାକୁ ଟଙ୍କା ମାଗିବ । ବରଂ ତାକୁ ପଦେଏ ଲେଖି ଜଣାଇଦିଅ, ଅବାଇଜରେ ଗୁଡ଼ାଏ ଖର୍ଚ୍ଚ ନ କରି କିଛି ଟଙ୍କା ସଞ୍ଚି ପାରିଲେ ଘର ଦି' ବଖରା କରିବା । ଠାକୁର ଚାହିଁଲେ କାଲି ସକାଳେ ଘରକୁ ବୋହୂ ଆସିବ । ବୋହୂ ଆଣି କ'ଣ ଏଇ ଗୁମୁଟି ଘରେ ପୂରାଇବା ?

ମୁଁ ତା' ପଇସାକୁ ଲୋଭ କରୁଛି ନା କ'ଣ ତମେ ମୋତେ ଆଗରୁ ବାଟ ଛେକୁଛ । ସିଏ ଭଲରେ ରହିଲା ସେଇଟା ହିଁ ମୋପାଇଁ ସବୁଠୁ ବଡ଼ ଖୁସି । ମୁଁ ତାକୁ ଚିଠି ଲେଖି ଏକଥା ଜଣାଇପାରିବିନି, ପାରୁଛ ଯଦି ତମେ ଜଣାଇଦିଅ । କିଛି ପଇସା ସଞ୍ଚୟ କରି ରଖିଥିଲେ ଭଲ ମନ୍ଦରେ କାମକୁ ଆସିବ । ତମେ ଯେଉଁ କଥା କହୁଛ - ତା' ପଇସାରେ ଘର ଦି' ବଖରା କରିବାପାଇଁ, ସେଇଟା ଠିକ୍ ନୁହେଁ । ବାପ ହିସାବରେ ମୁଁ ମୋ ରୋଜଗାରରେ ତା'ପାଇଁ ଘର ଦି' ବଖରା କରିଦେବି ନିଶ୍ଚୟ । ସିଏ ଯେମିତି ଆଉ ଅଭିଯୋଗ କରିପାରିବ ନାହିଁ ଯେ ତା' ବାପ ତା' ପାଇଁ କିଛି କରିନି ବୋଲି ।

କିଛି ମାସ ଯାଏଁ ନିୟମିତ ଚିଠି ଦେଉଥିଲା ଭଲରେ ଅଛି ବୋଲି । ଧୀରେ ଧୀରେ ଚିଠିପତ୍ର ଅନିୟମିତ ହେଲା । ତା' ମାଆ ମନ ଖାଲି ହାଇଁପାଇଁ ହୁଏ । କାହିଁକି ଚିଠି ଦେଉନି ବୋଲି । ପୁଣି ନିଜେ ନିଜକୁ ବୁଝାଏ - କାରଖାନାରେ କାମ କରୁଛି, କେତେ କାମ ଥିବ ତା'ର । ବେଳ ମିଳିଲେ ସିନା ଚିଠି ଦେବ । ନୂଆ ନୂଆ ଚାକିରି, କାମ ଶିଖୁଥିବ । ହଉ ଚିଠି ନ ଦେଲା ନାହିଁ । ଭଲରେ ଥାଉ ।

ଥରେ ତା' ସାଙ୍ଗରେ ସୁରାଟ ଯାଇଥିବା ଗୋଟେ ପିଲା ତା' ଘରକୁ ଆସିଥିଲା । ତା' ହାତରେ ପୁଅ ପଠାଇଥିଲା ତା' ମାଆ ପାଇଁ ଶାଢ଼ି, ମୋପାଇଁ ଜାମାଟିଏ, ତାକୁ ଦେଖି କୋଟିନିଧି ପାଇବା ପରି ଖୁସି ହୋଇଯାଇ ତା' ମାଆ ପୁଅର ଭଲମନ୍ଦ ଖବର ପଚାରିଗଲା । ଇଏ ଖାଲି ପ୍ରଶ୍ନ ଉପରେ ପ୍ରଶ୍ନ ପଚାରି ଯାଉଥିଲେ ବି ସେ ପିଲାଟା ଖାଲି ଭଲ-ଭଲ କହି ପଦିକରେ ଉତ୍ତର ଦେଉଥାଏ । ଶେଷରେ ସେ କେବଳ କହିଲା - ମାଉସୀ' ଆପଣଙ୍କ ପୁଅ ଟିକେ ଅବାଟରେ ଯାଉଛି, ଯଦି କେତେବେଳେ ଫୋନ୍ କରେ ତାକୁ ଟିକେ ଆକଟି ଦେବ । ମୁଁ କହିଛି ବୋଲି ତାକୁ କହିବ ନାହିଁ ।

ଆକାଶରୁ ଖସିପଡ଼ିବା ଭଳି ହୋଇ ତା' ମାଆ ପିଲାଟିକୁ ପଚାରିଲା— କେଉଁ ଅବାଟରେ ଯାଉଛିରେ ପୁଅ, କ'ଣ ମଦ ପାଣି କରୁଛି କି ? ମାଇକିନାଙ୍କ ପଛରେ ପଡ଼ିଛି କି ? ହେଲେ ସେ ପିଲାଟା ଜମା ଗୁମର ଖୋଲିଲା ନାହିଁ । କେବଳ କହିଲା ଚିଠିରେ ହେଉ ବା ଫୋନ୍ କଲେ ତାକୁ ଟିକେ ଆକଟି ଦେବ ।

ତା' ମାଆ ଚିଠି ଦେଇ ଆକଟି ଥିଲା । ଦୁନିଆ ରାଣ ନିୟମ ପକାଇ ତାକୁ ମଦପାଣି ଓ ମାଇକିନାଙ୍କ ମୋହରୁ ଦୂରେଇ ରହିବାକୁ ପରାମର୍ଶ ଦେଇଥିଲା । ହେଲେ ପୁଅଠାରୁ ସେ ବିଷୟରେ କୌଣସି ଚିଠି ଆସୁ ନ ଥିଲା ।

କିଛି ମାସ ପରେ ପୁଅ ଚିଠି ଦେଲା ତା' ଦେହ ଭଲ ରହୁନି ବୋଲି । ମାଆ ମନ ବ୍ୟସ୍ତ ହେଲା । ଖବର ପଠାଇଲା ଘରକୁ ପଳାଇ ଆସିବାକୁ । ପୁଅ କହିଲା - ହଅ, କ'ଣ ଟିକେ ହୋଇଛି ଭଲ ହୋଇଯିବନି କି । ଏବେ କାମଦାମ ଛାଡ଼ି ଏତେ ଖର୍ଚ୍ଚ କରି ଘରକୁ ଫେରିବି କାହିଁକି ।

ଯେତେବେଳେ ଶରୀର ଦୁର୍ବଳ ହୋଇ କର୍ମ ଅଚଳ ହେଲା, ସେତେବେଳେ ଫେରିଲା ଘରକୁ । ତା' ଫେରିବା ବେଳର ଚେହେରା ଦେଖି ମାଆ ଖାଲି ଭୋ-ଭୋ ହୋଇ କାନ୍ଦିଲା । କହିଲା - କହୁଥିଲୁ ପରା ଚାକିରି କରି ସୁଖରେ ରହିବୁ ବୋଲି ? ଏ କି ଭେକ ହୋଇଛି ତୋ'ର ? ଶାଳଗଜା ପରି ଦେହ ତୋର ଶୁଖି ନଳିତା କାଠିରେ କେମିତି ଲାଖିଲାଣି ?

ସଙ୍ଗେ ସଙ୍ଗେ ତାକୁ ଦେଖାଇଲୁ ଡାକ୍ତର । ଡାକ୍ତର ସବୁ ପରୀକ୍ଷା କଲେ । ତା' ରକ୍ତର କେଉଁ ଗୋଟାଏ ପରୀକ୍ଷା ଏଠି ହୋଇପାରିବ ନାହିଁ କହି ବାହାରକୁ ପଠାଇଲେ । ସେ ରିପୋର୍ଟ ଆସିବା ପରେ ଡାକ୍ତର ତ ଆକାଶରୁ ଖସିବା ପରି ହୋଇ ଆମ ମୁହଁକୁ ଚାହିଁଲେ । ପୁଅ ଆମର କେଉଁଠି ରହୁଥିଲା । କ'ଣ କରୁଥିଲା । କାହା କାହା ସାଙ୍ଗରେ ମିଶେ, ଏମିତି ନାନା କଥା, ଯେଉଁ କଥାର ବାଗବାଇସ ଆମେ ପାଉ ନ ଥିଲୁ କି ରୋଗ ସହ ସେ କଥାର କି ସମ୍ପର୍କ ଜାଣିପାରୁ ନ ଥିଲୁ ।

ପୁଅପାଇଁ ଗୋଟେ ଭିନେ ୱାର୍ଡରେ ରହିବାର ବନ୍ଦୋବସ୍ତ କରାଗଲା । ଦଳକୁ ଦଳ ଡାକ୍ତର ଆସିଲେ ତାକୁ ଦେଖିବାପାଇଁ । ମୁଁ ଯେତିକି ଖୁସି ହେଉଥିଲି ଯାହାହେଉ ସାମାନ୍ୟ ରିକ୍ସାବାଲାର ପୁଅଟିଏପାଇଁ ଏ ଡାକ୍ତରମାନଙ୍କର କେତେ ଦରଦ, ସେତିକି ଭୟ ବି ପାଉଥିଲି ଯେ ପୁଅର କିଛି ଗୋଟିଏ ବିଷମ ରୋଗ ନିଶ୍ଚୟ ହୋଇଛି, ନଚେତ୍ ଏତେ ଡାକ୍ତର ଧାଉଡ଼ି ବାନ୍ଧି ଥାଆନ୍ତେ କାହିଁକି ? ଖାଲି ତ ଡାକ୍ତର ଦେଖୁ ନ ଥିଲେ । ସେ ଯେଉଁ ସବୁ ଦାମୀ ଦାମୀ ଔଷଧ ଲେଖୁଥିଲେ ତାକୁ କିଣିବାପାଇଁ ମୁଁ ନୟାନ୍ତ ହୋଇ ପଡୁଥିଲି । ପୁଅପାଇଁ ଘର ଦି' ବଖରା ବନାଇ, ଦମ୍ଭରେ ବାପ ବୋଲି ଗର୍ବ କରିବି ବୋଲି ପେଟରୁ କାଟି ଯେଉଁ କେତେଟା ଟଙ୍କା ରଖିଥିଲି ତାହା ଦି' ଦିନରେ ସରି ଠୋ-ଠା-ଠି ହୋଇଗଲା । ପୁଅର ରୋଗ କମିବାର କୌଣସି ଉପସର୍ଗ ଦେଖାଯାଉ ନ ଥିଲା । ମାଡ଼ି ମାଡ଼ି ମୋ ସ୍ତ୍ରୀ କାନରେ ନୋଳି ଦୁଇପଟ ଥିଲା । ତାକୁ ଯାଇ ମୁରଲୀ ବଣିଆକୁ ବିକିଲି, ହେଲେ ଜୁଆର ପରି ମାଡ଼ି ଆସୁଥିବା ଖର୍ଚ୍ଚକୁ ସେ ଶାମୁକାଏ ପାଣିପରି ସରିଗଲା । ହାତ ଖାଲି ହେଲା ବେଳକୁ ମୁଁ ଚାହିଁଲି ମୋ ସ୍ତ୍ରୀର ମୁହଁକୁ — ସେ କହିଲା ମୋ ପୁଅ ଆଗ ନା ଏ କଂସାବାସନ ଆଗ । ନିଅ ୟାକୁ, କଂସାରିକୁ ବିକି ମୋ ପୁଅକୁ ଭଲ କର । ସେତକ ବି ଗଲା ।

ଧୀରେ ଧୀରେ ଘରର ସବୁ ଆସବାବପତର ଚାଲିଗଲା । ଆମର କେଉଁ ଥିଲାବାଲା ଘର ଯେ ଦାମିକା ଜିନିଷ ଥିଲା । ଯାହା ଥିଲା ତାକୁ ବିକିଦେଲା ପରେ ମୁଁ ସଂପୂର୍ଣ୍ଣ ନିଃସ୍ୱ ହୋଇଗଲି । ଠିକ୍ ସେହି ବେଳକୁ ଡାକ୍ତର କହିଲେ - ୟାକୁ ଆଉ ଏଠାରେ ପକାଇ ରଖି ଲାଭ ନାହିଁ । ପାରିବ ଯଦି ତମେ ତାକୁ କଟକ ବଡ଼ ଡାକ୍ତରଖାନାକୁ ନେଇଯାଅ । ଏ ରୋଗର ତ ଔଷଧ ଆଜିଯାଏଁ ବାହାରି ନାହିଁ । ସେମାନେ ଚେଷ୍ଟା କରି ଦେଖନ୍ତୁ, ଯଦି ପାରିବେ ଭଲ କଥା ।

କଟକ ବଡ଼ଡାକ୍ତରଖାନା ନେବା କଥା ଶୁଣି ମୋ ମୁଣ୍ଡରେ ବଜ୍ର ପଡ଼ିଲା । ହାତରେ କାଣି କଉଡ଼ିଟିଏ ନାହିଁ, କଟକ ନେବି କେମିତି ?

ମୋ ରିକ୍ସାରେ ବସାଇ ପୁଅକୁ ଘରକୁ ନେଇଆସିଲି । କଟକ କେମିତି ନେଇକରି ଯିବି ଭାବିପାରୁ ନ ଥିଲି । ମୋ ସ୍ତ୍ରୀର ବିକଳ ଓ କାନ୍ଦ କାନ୍ଦ ମୁହଁକୁ ମୁଁ ଜମା ଚାହିଁପାରୁ ନ ଥାଏ । ସେ ମୋତେ କେବଳ କହୁଥାଏ - ଯାହା ବି ହେଲେ କିଛି ଗୋଟିଏ ବ୍ୟବସ୍ଥା କରି ମୋ ପୁଅକୁ ଭଲ୍ କର । ବିକି ଦିଅ ଏ ଘର, କ'ଣ ମିଳିବ ମୋର ଏ ଘରରୁ । ମୁଁ ଭାବୁଥିଲି ଘର ବିକିବି, କେଉଁ ଘରକୁ । ସରକାରୀ ଜାଗାକୁ ମାଡ଼ିବସି ଆମେ ବସ୍ତି ବନାଇଛୁ । ୟାର କେଉଁ କାଗଜପତ୍ର ଅଛିନା, କେଉଁ ଭଲ ଲୋକ ଆସି ଏ ବସ୍ତିରେ ଘର କିଣିବ ? ଆଉ ଏ ରିକ୍ସାବାଲା ବସ୍ତିରେ

ତ ଦିନେ ରିକ୍ସା ଚକ ନ ଗଡିଲେ ଚୁଲି ଜଳୁନି ଅଧିକାଂଶଙ୍କର, ସେଥିରେ କିଏ ବାହାରିବ ମୋର ଏ ଘରକୁ କିଣିବାକୁ ?

କିଛି ସମୟ ଏପଟ ସେପଟ ବିଚଳିତ ହୋଇ ବୁଲିବା ପରେ କହିଲି— ଯାଉଛି କିଛି ଗୋଟେ ନିଶ୍ଚେ ବ୍ୟବସ୍ଥା କରି ଆସୁଛି । ଗୋଟିଏ ଠୋସ୍ ଦମ୍ ନେଇ ଘରୁ ସିନା ବାହାରି ଆସିଲି, ମାତ୍ର ବାହାରକୁ ଆସିବା ପରେ ଚିନ୍ତା କରି କି ବ୍ୟବସ୍ଥା ବା ମୁଁ କରିପାରିବି । ତଥାପି ମୁହଁ ହରାଇ ମାଗିଲି ବହୁ ଲୋକଙ୍କୁ - ପୁଅ ମୋର ଶକ୍ତ ବେମାର, ତାକୁ କଟକ ନେଇକରି ଯିବି । ମୋତେ କିଛି ଟଙ୍କା ଉଧାର ଦିଅ, କିଏ ବା ଉଧାର ଦେବ । ବୁଲି ବୁଲି ବହୁତ ନିରାଶ ହେବା ପରେ ଗଲି କେ. ଜଗନ୍ନାଥ ପାତ୍ର ପାଖକୁ । ରିକ୍ସା ଭଡ଼ା ଲଗାଇବା ତା'ର ବେଉସା । ତାକୁ କହିଲି କିଛି ଉଧାରପାଇଁ । ସେ ମୋତେ ଥଟ୍ଟା କଲାଭଳି କହିଲା - ତୁ ନିଜେ ରିକ୍ସାର ମାଲିକ ହୋଇ ମୋତେ ଉଧାର ମାଗୁଛୁ କ'ଣ ? ଯେଉଁମାନେ ମୋଠାରୁ ରିକ୍ସା ଭଡ଼ାରେ ନିଅନ୍ତି, ମୁଁ ସିନା ସେମାନଙ୍କୁ ଦାୟ ଦରକାରରେ ଉଧାରି ଦିଏ । ତୁ ତ ମୋ ଭଳି ରିକ୍ସା ମାଲିକ । ମୋର ପଚାଶ ଖଣ୍ଡ ଥିଲେ ତୋ'ର ତ ଖଣ୍ଡେ ଅଛି ନା । ରିକ୍ସା ମାଲିକକୁ ରିକ୍ସା ମାଲିକ ଉଧାରି ଦେବ କେମିତି ?

ହଉ ଉଧାରି ନ ଦେଲେ ନାହିଁ ପାତ୍ରେ - ମୋ ରିକ୍ସାକୁ ରଖି ମୋତେ କିଛି ଟଙ୍କା ଦିଅ ।

କ'ଣ ଦିନକୁ ଦଶ ଟଙ୍କା ଭଡ଼ାରେ ?

ନା, ଭଡ଼ାକୁ ନୁହଁ, ମୁଁ ବିକିଦେବି ରିକ୍ସାଟାକୁ ।

ବିକିଦେବୁ, କ'ଣ ଅଟୋ ଫଟୋ କିଣିବୁ କି ?

ଏଇଟା ଥଟ୍ଟାତାମସାର ବେଳ ନୁହେଁ ପାତ୍ରେ - ମୋ ଘର ବୁଡ଼ି ପାଣି ଆଣୁଏ। ପଇସା ନେଲେ ପୁଅକୁ ଧରି କଟକ ବଡ଼ ଡାକ୍ତରଖାନା ନେବି ।

କିଣିବା କଥା ଶୁଣି ସେ ମୋ ରିକ୍ସା ପାଖକୁ ଆସିଲା । ବଳଦର ଦାନ୍ତ ଦେଖି ରେଟ୍ କଲା ଭଳି ରିମ୍ ଠାରୁ ଆରମ୍ଭ କରି ହୁଡ୍ ଯାଏ ସବୁ ପରଖିଲା । ଦେଖିସାରି କହିଲା - ଇଏତ ହଜାରେ ଟଙ୍କାରୁ ଅଧିକ ହେବ ନାହିଁ ।

ଛଅ ମାସ ବି ହୋଇନି, କିଣିଛି ତିନିହଜାର ଦେଇ - ଏବେ ହଜାରେ ଟଙ୍କା ମାତ୍ର ହେବ କହୁଛ ?

ନୂଆ ଜିନିଷ କଥା ଅଲଗା - ଏଇଟା ସେକେଣ୍ଡ ହ୍ୟାଣ୍ଡ ହେଲାନି ।

ଦେଖ ପାତ୍ରେ । କେତେ ଅସୁବିଧାରେ ପଡ଼ିଲେ ମଣିଷ ତା'ର ବୃତ୍ତିକୁ ବିକେ, ଥରେ ଚିନ୍ତାକର ।

ହଉ ଛାଡ଼ ଆଉ ମୂଲଚାଲ ନାହିଁ - ଟଙ୍କା ବାରଶହ ଦେବି । ଦେବ ଯଦି ଦିଅ ନଚେତ୍ ଅନ୍ୟ ଗରାଖ ଦେଖ ।

ଉପାୟ ବା ଆଉ କ'ଣ ଥିଲା - ବାଧ ହୋଇ ଟଙ୍କା ବାରଶହରେ ରିକ୍ସା ବିକି ଫେରିଲି ।

ସେହି ବାରଶହ ଟଙ୍କାକୁ ଧରି ପୁଅକୁ ଆଣିଥିଲି କଟକ । ଏଠିବି ତା'ର ରିପୋର୍ଟକୁ ଦେଖି ଗୋଟିଏ ଯାତ୍ରା କଲେ ଡାକ୍ତରମାନେ । ଆହୁରି ଦାମୀ ଦାମୀ ଔଷଧ ଲେଖିଲେ । ମୁଁ କହିଲି - ବାବୁ, ମୁଁ ବଡ଼ ଗରିବ । କିଛି ସରକାରୀ ଔଷଧ ଦେଇ ମୋ ପୁଅକୁ ବଞ୍ଚାନ୍ତୁ ।

ସରକାରୀ ଔଷଧ ତ ଦେଉଛୁ - ହେଲେ ଯେଉଁଟା ସରକାରଙ୍କର ସପ୍ଲାଏ ନାହିଁ ତାକୁ ତ ତମକୁ କିଣିବାକୁ ପଡ଼ିବ । ଦିନ ତିନିଟା ଯାଇଛି କି ନାହିଁ ସରିଗଲା ମୋର ସବୁ ପଇସା । ସେଦିନ ରାତିରେ ଡାକ୍ତର ଯେଉଁ ଚିଠା ଦେଇ ମୋତେ ଔଷଧ କିଣି ଆଣିବାକୁ କହିଲେ, ତାକୁ ଧରି ମୁଁ ଠିଆ ହେଲି ଅନେକ ବେଳଯାଏଁ । ଡାକ୍ତର ମୋତେ ବାରମ୍ବାର କହୁଥାଆନ୍ତି - ଯାଅ, ଯାଅ, ଜଲଦି କିଣିଆଣ । ମୁଁ ଆଉ କିଛି ନ କହି ବାହାରି ଆସିଲି ପଦାକୁ । ହେଲେ ଖାଲି ହାତରେ କେଉଁ ଦୋକାନକୁ ଯିବି ବା ଔଷଧପାଇଁ । ଔଷଧ ନ ହେଲେ ବି ଫେରିବି କିପରି ପୁଅ ପାଖକୁ । ବାହାରେ ବୁଲିଲି ଅନେକ ବେଳଯାଏ । ଡାକ୍ତର ମୋତେ ଅପେକ୍ଷା କରି କରି ଫେରିଗଲା । ପରେ ଫେରିଲି ପୁଅ ପାଖକୁ । ପୁଅ ସେମିତି ଶୋଇଥାଏ ବିଛଣାରେ । ତା' ମୁହଁକୁ ଥରେ ଚାହିଁଦେଇ ପାଣି ମୁନ୍ଦେ ପିଇ ଶୋଇପଡ଼ିଲି ତା' ଖଟିଆ ପାଖରେ ।

ପୁଅ ବୋଧେ ଜାଣିପାରିଲା ମୋର ଅସହାୟତାକୁ । ରାତି ପାହିବା ବେଳକୁ ସେ ଟିକେଟ କାଟି ଦେଇଥିଲା । ସକାଳୁ ଜଣେ ଦିଦୀ ଆସି ଦେଖିବା ପରେ ସଙ୍ଗେ ସଙ୍ଗେ ଖବର ଦେଲେ ଡାକ୍ତରଙ୍କୁ । ଡାକ୍ତର ଆସି ତାକୁ ଥରେ ଦେଖି ନେଇ ଧଳା କପଡ଼ାଟିକୁ ଟାଣି ଦେଲେ ତା' ମୁହଁ ଉପରକୁ । ମୋତେ କହିଲେ - ଅଫିସ୍‌କୁ ଆସ । ଡେଥ୍ ସାର୍ଟିଫିକେଟ୍ ନେଇ ଶବ ନେଇଯିବ ।

ମୋ ଆଖିକୁ ଆଉ ଆସୁ ନ ଥିଲା ଲୁହ । ମୁଁ ତାଙ୍କ ପଛେ ପଛେ ଅଫିସ୍‌କୁ ଗଲି । ସେଠୁ ଡେଥ୍ ସାର୍ଟିଫିକେଟ୍ ଧରି ଆସିବା ବେଳକୁ ପୁଅ ଯେଉଁ ଘରେ ଥିଲା ସେ ଘର ଫାଙ୍କା ପଡ଼ିଥିଲା । ତାକୁ ଉଠାଇ ନିଆ ଯାଇଥିଲା ଅନ୍ୟତ୍ର, ଖୋଜି ଖୋଜି ମୁଁ ସେଠାରେ ପହଞ୍ଚିଲି । ସେଠି ପହଞ୍ଚିବା ପରେ ଯାଇ ମୋର ହୋସ୍ ଆସିଲା ଯେ ମୁଁ ଶବ ନେବି ଯେ କେମିତି ନେବି ? ପାଖରେ ତ କାଣିକଉଡ଼ିଟାଏ ନାହିଁ । ଏଠାରୁ ଶବ ନେବି ଯେ କିପରି ନେବି ତାକୁ ଭଦ୍ରକ ଯାଏ ?

କାଲି ଏଠାରେ ଲୋକ କୁହାକୁହି ହେଉଥିଲେ ଯେ ଗୋଟିଏ ଶବକୁ କୁକୁର ଖାଉଥିବାର ଫଟୋ ବାହାରିଥିଲା ଖବରକାଗଜରେ । ସେଥିପାଇଁ ଅନେକ ହୋ ହାଲ୍ଲା ହୋଇଥିଲା ଏଠି । ସେମିତିକା ଦୃଶ୍ୟଟିଏ ନିଶ୍ଚୟ ଅଭାବିତ ଲାଗିଥିବ ବହୁ ଲୋକଙ୍କୁ । ହେଲେ କେହି କ'ଣ ଥରେ ଚିନ୍ତା କରିଛନ୍ତି କି କେତେ ନିଃସ୍ୱ ହେଲେ ଯାଇ ମଣିଷ ତା'ର ନିଜର ସଂପର୍କୀୟର ଶବକୁ ବେଓ୍ୱାରିସ୍ କରି ଛାଡ଼ିଦିଏ ? ଶବଟିକୁ କାନ୍ଧରେ ପକାଇ ବୋହିନେବ କି ମହାନଦୀ ପଠାକୁ ? ନା-ନଈ ବାଲିରେ ପକାଇଦେଲେ ତ ସେହି କୁକୁର ବିଲୁଆ ଖାଇବେ, ବରଂ ଏଠି ଛାଡ଼ି ଦେଇଗଲେ ଅନ୍ତତଃ ସରକାରୀ ଲୋକ ଅପେକ୍ଷା କରି କରି ତା'ର ଦାହ ବ୍ୟବସ୍ଥା କରିବେ ।

ଲୋକଟା ପୁଅର ଶବ ପାଖକୁ ଗଲା । ତା' ମୁହଁରୁ ଲୁଗା କାଢ଼ି ତାକୁ ଥରେ ଭଲ ଭାବରେ ଦେଖିନେଲା । ଉପରକୁ ହାତଯୋଡ଼ି ତା'ର ଆତ୍ମାକୁ ନମସ୍କାର କଲା । ନମସ୍କାର କରିବାପରେ କହିଲା - ଆଉ ଏ ଜଡ଼ବସ୍ତୁଟା ସଙ୍ଗେ କି ସଂପର୍କ ? ଯେଉଁ ସଂପର୍କକୁ ବଞ୍ଚାଇ ରଖିବାକୁ ସେ ତା'ର ସମସ୍ତ ଶକ୍ତି ଓ କ୍ଷମତାକୁ ସର୍ବସ୍ୱ ଉପଯୋଗ କରିଦେଲା, ସେ ଯଦି ତାକୁ ତୁଟାଇ ଦେଇ ଜଡ଼ ପାଲଟିଗଲା, ତେବେ ସେ କାହିଁକି ଆଉ ତା' ସହ ମାୟାରେ ଘାଣ୍ଟି ହେବ ? 'ତୋ ସହ ସବୁ ସଂପର୍କ ତୁଟିଗଲା' କହି ତା' ମୁହଁକୁ ପୁଣିଥରେ ଢାଙ୍କିଦେଇ ମୁହଁ ବୁଲାଇ ଚାଲିଲା ଏକମୁହାଁ । ଶବ ତୁରନ୍ତ ଉଠାଇ ନେବାପାଇଁ ତାକୁ କହୁଥିଲେ କିଛି କର୍ମଚାରୀ । ସେ କାହାରି କଥା ଶୁଣୁ ନ ଥିଲା - ଚାଲୁଥିଲା ଏକମୁହାଁ ଜଡ଼ ଓ ଜୀବନର ସଂପର୍କର ସରହଦ ଡେଇଁ ।

# ଭଙ୍ଗା ଅଇନାରେ ମୁହଁ

ଅମର୍ତ୍ତ୍ୟ ଆଜି ବିଶ୍ୱପ୍ରସିଦ୍ଧ । ସାରା ଜୀବନ ପ୍ରତିଷ୍ଠା ଓ ସମ୍ମାନରେ ଆଭୂଷିତ ହୋଇ ଆସିଛନ୍ତି । ଆଜି ବିଶ୍ୱର ସର୍ବଶ୍ରେଷ୍ଠ ସମ୍ମାନ ଓ ପୁରସ୍କାର ସେ ପାଇଛନ୍ତି । ଯେହେତୁ ସେ ତାଙ୍କର ଅଧ୍ୟାପକ ଜୀବନ ଏହି କଲେଜରୁ ଆରମ୍ଭ କରିଥିଲେ, ଏହା ଖୁବ୍ ସ୍ୱାଭାବିକ କଥା ଯେ ଏ କଲେଜ ଆଜି ତାଙ୍କର ଗୌରବପାଇଁ ଗୌରବାନ୍ୱିତ । ତେବେ ଯେଉଁ ସମ୍ପର୍କର ଦୁହାଇ ଦେଇ ମୋତେ ଆଜି ଆପଣମାନେ ଠିଆ କରାଇଛନ୍ତି ତାଙ୍କ ସହ ବିତାଇଥିବା ସମୟର ସ୍ମୃତିଚାରଣ କରି ତାଙ୍କୁ ଦିଆଯାଇଥିବା ସମ୍ବର୍ଦ୍ଧନାରେ ଅଭିଭାଷଣ ପ୍ରଦାନ କରିବାପାଇଁ ମୁଁ ବି ଆଜିଯାଏ ବୁଝିପାରିନି ସେ ସମ୍ପର୍କଟି କ'ଣ ଥିଲା । ଗୋଟିଏ ମହତ୍ତର ଲକ୍ଷ୍ୟ, ଜ୍ଞାନର ଶିଖର ଛୁଇଁବା ନେଇ ବିଭୋର ଥିବା ଗୋଟିଏ ବ୍ୟକ୍ତିସତ୍ତା ସହ କଟାଇଥିବା ସେହି ଅଳ୍ପ କେତେ ସମୟ ପ୍ରକୃତରେ ଆମର ସମ୍ପର୍କ ଥିଲା ନା ସଂଯୋଗ ।

ଶୈଶବରେ ଶୁଣିଥିବା ଲୋରିର ମଧୁର ରାଗିଣୀ ପରି ଅବଚେତନ ମନର କେଉଁ ନିଭୃତ କନ୍ଦରରେ ଲୁଚିରହିଛି ପ୍ରଥମ ବିବାହର ସ୍ମୃତି । ଗୋଟେ ଖିଆଲୀ ମଣିଷର ଜ୍ଞାନପାଗଳ ଭାବ ଓ ସଂସାର ବୈରାଗ୍ୟ ମୋତେ ଯେତିକି ବ୍ୟଥିତ କରିଥିଲା, ତା'ଠାରୁ ଅଧିକ ଦ୍ୱନ୍ଦ୍ୱରେ ପକାଇଥିଲା ଯେ ଏମିତି ଏକ ମଣିଷକୁ ନେଇ ମୁଁ ସଂସାର କରିବି କିପରି ? ଯେଉଁ ଜ୍ଞାନର ଗରିମା ଦେଖି ମୁଁ ଭଲପାଇ ବସିଥିଲି ତାଙ୍କୁ, ସେହି ଜ୍ଞାନ ହିଁ ଠିଆ ହେଲା ଆମ ଦାମ୍ପତ୍ୟ ଜୀବନରେ ପ୍ରାଚୀର ହୋଇ । ସେତେବେଳେ ମୁଁ ଭାବିଲି ସହପାଠୀ ଅମର୍ତ୍ତ୍ୟଙ୍କ ଜ୍ଞାନଲିପ୍ସା ଦୂରରୁ ଅନୁଭବ କରିବା ପାଇଁ ଠିକ୍ ହୋଇପାରେ ମାତ୍ର ସଂସାର ଭିତରେ ଛନ୍ଦି ହୋଇ ତାକୁ ଆତ୍ମସ୍ଥ କରିବାର ଯୋଗ୍ୟ ନୁହେଁ । ସୂର୍ଯ୍ୟର ଆଲୋକ ଓ ସୂର୍ଯ୍ୟଙ୍କ ଭିତରେ ଯେତିକି ଦୂରତା ଠିକ୍ ସେତିକି ଦୂରତା ଅମର୍ତ୍ତ୍ୟଙ୍କ ଜ୍ଞାନପାଗଳ ପଣ ଓ ସାଂସାରିକ ଜୀବନର ନିସ୍ପୃହତା ମଧ୍ୟରେ ।

ଅର୍ଥନୀତି ଆମ ଉଭୟଙ୍କର ବିଷୟ ଥିଲା । ମୋର ଯୁକ୍ତି ଥିଲା ଯେଉଁ ବିଷୟରେ ଆମେ ପାଠ ପଢ଼ିଛେ, ତାହା ଆମର ବ୍ୟକ୍ତିଗତ ଓ ପାରିବାରିକ ଜୀବନର ସାହାରା ହେବାପାଇଁ, ବ୍ୟକ୍ତିଗତ ଜୀବନ ହେବାକୁ ନୁହେଁ । ବିଷୟଜ୍ଞାନ ଓ ବିଷୟଗତ ଜ୍ଞାନ ମଧ୍ୟରେ ଅନେକ ଦୂରତା । ଆମେ ଅର୍ଜିଥିବା ଜ୍ଞାନକୁ କେବଳ ବୃତ୍ତିଗତ ପରିସର ମଧ୍ୟରେ ରଖି ଏବେ ଜୀବନର ବ୍ୟାବହାରିକ ଜ୍ଞାନ ଉପରେ ଗୁରୁତ୍ୱ ଦେବା ଆବଶ୍ୟକ । ମାତ୍ର ଅମର୍ତ୍ତ୍ୟ କହୁଥିଲେ, ଯେଉଁ ବିଷୟରେ ସର୍ବୋଚ୍ଚ ଡିଗ୍ରୀଟିଏ ପାଇଛୁ

ବୋଲି ଆମେ ଅହମିକା ପୋଷଣ କରୁଛୁ, ମୋ ମତରେ ଆମେ ସେ ବିଷୟର ବର୍ଣ୍ଣମାଳାକୁ ମଧ୍ୟ ଶେଷ କରିପାରି ନାହୁଁ । ସାମାଜିକ ଜୀବନ ଓ ସମାଜର ଆର୍ଥନୀତିକ ପ୍ରଗତିପାଇଁ ଯେଉଁ ବିଷୟଟି ଏତେ ଗୁରୁତ୍ୱପୂର୍ଣ୍ଣ ତାକୁ ଏମିତି ହାଲ୍‌କା ଭାବେ ଗ୍ରହଣ କରିନେଇ ଆମେ ଆମର ବ୍ୟକ୍ତିଗତ ସୁଖ ଓ ସଂସାର ପ୍ରତି ଭାବପ୍ରବଣ ହୋଇପଡ଼ିଲେ ଚଳିବ ନାହିଁ । ଆମକୁ ଏହାଠାରୁ ଅଧିକ କିଛି କରିବାକୁ ପଡ଼ିବ । ଅବଶ୍ୟ ମୁଁ ଏଇନେ ତମକୁ କହିପାରିବିନି ସେହି ଅଧିକଟା କ'ଣ । ମାତ୍ର ମୁଁ ଏହି ଜ୍ଞାନର ଭିତରକୁ ଯେତେ ଅଧିକ ଅଧିକ ଯାଉଛି ତାହା ମୋତେ ସେତେ ବେଶି ରହସ୍ୟମୟ ଲାଗୁଛି । ଏହି ରହସ୍ୟମୟତାକୁ ଉଦ୍‌ଘାଟନ ନ କରି ମୁଁ ସେଥିରୁ ମୁହଁ ବୁଲାଇ ଆଣିପାରିବି କିପରି ?

ଭାବିଲି ସଂସାରରେ ଛନ୍ଦି ହେଲେ ସଂସାରପଣର ନିଷ୍ଠୁର ବାସ୍ତବତାରେ ଏ ପାଗଳପଣର ବିଭୋର ଭାବ ରହିବ ନାହିଁ, ବଳେ ବାଟକୁ ଆସିଯିବେ । ଯୋଗକୁ ଏକ କଲେଜରେ ଅଧ୍ୟାପନା କରିବାର ସୁଯୋଗ ମିଳିଲା ଆମ ଉଭୟଙ୍କୁ । ସ୍ୱଳ୍ପ ଦରମାରେ ଦିଲ୍ଲୀ ପରି ସହରରେ ଘରଟିଏ ପାଇବାକୁ ମୁଁ ନୟାନ୍ତ ହେଉଥିବା ବେଳେ ଅମର୍ତ୍ତ୍ୟ ଖୁବ୍ ନିସ୍ପୃହ ଭାବରେ କୁହନ୍ତି - ଏଠି ରହିଲେ ଆମର କ'ଣ ଅସୁବିଧା ହେଉଛି ଯେ ତମେ ଏତେ ବ୍ୟସ୍ତ ହୋଇ ଘର ଖୋଜୁଛ ? ଦିନମାନ ତ ଆମର ବିତୁଛି କ୍ଲାସ୍ ଓ ଲାଇବ୍ରେରୀରେ, ତା'ପରେ କଲେଜ ପାଖ ହୋଟେଲ୍‌ରୁ କ'ଣ ଟିକେ ଖାଇଦେଇ ଆମେ ଏ ଲଜ୍‌କୁ କେବଳ ଶୋଇବାକୁ ତ ଆସୁଛୁ । ଏଇଟା ବି କଲେଜକୁ ପାଖ, ଅସୁବିଧା ହେଉଛି କେଉଁଠି ?

ହଁ—ଅସୁବିଧା କିଛି ନାହିଁ ଯେ ହେଲେ ଏ ଲଜ୍‌ର ଦୈନିକ ଭଡ଼ା କେତେ ଜାଣିଛ ତ ? ଆମେ ଉଭୟ ମିଶି କେତେ ଦରମା ପାଇବା ଏବଂ ଆମର ଲଜ୍‌ରେ ରହିବା ଓ ହୋଟେଲ୍‌ରେ ଖାଇବାରେ ଖର୍ଚ୍ଚ କେତେ ହେଉଛି ତମେ କେବେ ହିସାବ କରିଛ ?

ତମେ ତ ଏ ବିଷୟରେ ମୋତେ କେବେ କହିନ ।

ତମେ କେବେ ମୋତେ ପଚାରିଛ ନା ମୋତେ କହିବାପାଇଁ ସୁଯୋଗଟିଏ ଦେଇଛ । ବୁଝିଲ, ଏସବୁ ହେଉଛି ବ୍ୟାବହାରିକ ଅର୍ଥନୀତି ଏବଂ ଆମେ ଯାହା ପଢୁଛେ ବା ପଢ଼ାଉଛେ ତାହା ହେଉଛି ପୁସ୍ତକଗତ ଅର୍ଥନୀତି । ତମେ ତାହାର ପ୍ରଭେଦ ବୁଝିପାରିନ ଏ ଯାଏଁ ।

ହଁ - ତମେ ଠିକ୍ କଥା କହୁଛ । ତେବେ ଭଡ଼ାଘରଟିଏ ଠିକ୍ କର ଆମେ ସେଠାକୁ ଚାଲିଯିବା ।

ଗୋଟେ ସେୟାର କ୍ୱାର୍ଟରରେ ତମେ ରହିପାରିବ ?

ସେୟାର କ୍ୱାର୍ଟର କ'ଣ ?

ଆମ କଲେଜର ଜଣେ ବ୍ୟାଚଲର ଅଧ୍ୟାପକ ଗୋଟେ କ୍ୱାର୍ଟର ଭଡ଼ା ନେଇଛନ୍ତି । ସେଥିରେ ଦୁଇଟି ବେଡ୍‌ରୁମ୍ ଅଛି । ତାଙ୍କ ଦରମାକୁ ଚାହିଁ କ୍ୱାର୍ଟର ଭଡ଼ାଟା ଅଧିକ ହୋଇଯାଉଛି । ତେଣୁ ସେ ଚାହୁଁଛନ୍ତି ତାଙ୍କ କ୍ୱାର୍ଟରରେ ତାଙ୍କ ସହ ଆଉ କିଏ ରହିଲେ ତାଙ୍କର ଆର୍ଥିକ ବୋଝ ଟିକେ କମନ୍ତା ।

ଭଲ କଥା ତ, ଏଥିରେ ଆମକୁ ଅସୁବିଧା କ'ଣ ହେବ ?

ଅସୁବିଧାଟା ହେବ କିଚେନ୍ ଗୋଟିଏ, ଆମକୁ ତାଙ୍କ ସହ ମିଶି ରୋଷେଇ କରି ଖାଇବାକୁ ପଡ଼ିବ ।

ଇଏ ତ ଆହୁରି ସୁବିଧା କଥା ।

ଯଦି ତୁମକୁ ଏସବୁ ସୁବିଧା ଲାଗିବ ତେବେ ମୁଁ ତାଙ୍କୁ କହିଦେଉଛି, କାଲିଠାରୁ ଆମେ ତାଙ୍କ କ୍ୱାର୍ଟରକୁ ଚାଲିଯିବା ।

ନୂଆ କ୍ୱାର୍ଟରକୁ ଯିବାପରେ ଏକ ନୂଆ ଢଙ୍ଗରେ ଜୀବନକୁ ଆରମ୍ଭ କରିବାର ଲକ୍ଷ୍ୟ ଥିଲା । ଅନ୍ତତଃ ଅମର୍ତ୍ତ୍ୟଙ୍କୁ ସାଂସାରିକ ଜଞ୍ଜାଳ ଓ ବନ୍ଧନ ଭିତରେ ପକାଇ ହେବ ବୋଲି ଭାବିଥିଲି । ସେୟାର କ୍ୱାର୍ଟର ଓ ସେୟାର କିଚେନ୍ ତେଣୁ ସେହି ଅନୁସାରେ ଆମର ଦୈନନ୍ଦିନ କାର୍ଯ୍ୟନିର୍ଘଣ୍ଟ ପ୍ରସ୍ତୁତ ହେଲା । ଯେହେତୁ ଆମେ ତିନିଜଣଯାକ ବୃତ୍ତିରେ ଥିଲୁ ଅଧ୍ୟାପକ ଏବଂ ତିନିଜଣଙ୍କୁ ଏକା ସମୟରେ କଲେଜ ଯିବାକୁ ପଡ଼ିବ, ତେଣୁ ରୋଷେଇ ଭଳି ଏକ ସମସ୍ୟାବହୁଳ କାର୍ଯ୍ୟକୁ ପ୍ରଥମେ ଭାଗ କରିବାକୁ ପଡ଼ିଲା । ପ୍ରଥମେ ରହିଲା ରୋଷେଇପାଇଁ ବଜାର ସଉଦା କରିବା । ଆମ ସହ ଥିବା ଅଧ୍ୟାପକଜଣକ ତାଙ୍କ ନିଜ ତରଫରୁ କହିଲେ ସେ ଦାୟିତ୍ୱ ମୋର, ଏଥି ସହ ମୁଁ ମଧ୍ୟ ପରିବା କଟାକଟି ଓ ମସଲା ଗ୍ରାଇଡିଂ ଇତ୍ୟାଦି ଦାୟିତ୍ୱ ନେଇଯିବି । ମୁଁ ସ୍ତ୍ରୀଲୋକଟିଏ ହୋଇଥିବାରୁ ରୋଷେଇ କରିବା ଦାୟିତ୍ୱ ମୋ ଉପରେ ପଡ଼ିବା ସ୍ୱାଭାବିକ । ଏହାପରେ ରହିଲା ଖାଇବା ବାସନ ଓ ରୋଷେଇ ସରଞ୍ଜାମ ସଫାସଫି କରିବା ଦାୟିତ୍ୱ । ଅମର୍ତ୍ତ୍ୟ ଏହାକୁ ନେବାପାଇଁ କହି ନ ଥିଲେ ମଧ୍ୟ ଆମେ ଉଭୟ ସେ ଦାୟିତ୍ୱ ତାଙ୍କୁ ଦେଇଥିଲୁ ।

ଆମର ମେସ୍ ସୁଚାରୁରୂପେ ଚାଲିଥିଲା । ମାତ୍ର କିଛିଦିନ ପରେ ଦେଖିବାକୁ ମିଳିଲା ବାସନମଜା ଶେଷରେ କିଛି କପ୍ ଓ ପ୍ଲେଟ୍‌ର ସଂଖ୍ୟା କମି କମି ଯାଉଥିଲା । କପ୍ ଓ ପ୍ଲେଟ୍ କୁଆଡ଼େ ଗଲା ଖୋଜିଲାବେଳେ ଅମର୍ତ୍ତ୍ୟ କହିବେ ଆଜି ବାସନ ଧୋଇବା ବେଳେ ହାତରୁ ପଡ଼ି ଭାଙ୍ଗିଗଲା । ଏପରି ହେଲା ତାଙ୍କର ବାସନମଜା

ଦାୟିତ୍ୱପାଇଁ ଆମକୁ ଯଥେଷ୍ଟ କ୍ଷତି ସହିବାକୁ ପଡ଼ିଲା । ଏଥିରୁ କିପରି ମୁକ୍ତି ମିଳିବ ସେ କଥା ଚିନ୍ତା କରୁଥିବାବେଳେ ଆମ ସହିତ ରହୁଥିବା ଅଧ୍ୟାପକ ଜୟନ୍ତ କହିଲେ - ମ୍ୟାଡାମ୍ ! ଏ ସମସ୍ୟାରୁ ମୁକ୍ତି ମିଳିବ ଯଦି ଆମେ ଷ୍ଟିଲ୍‌ର ଅନ୍‌ବ୍ରେକେବଲ ବାସନ ଏବଂ କପ୍ ପ୍ଲେଟ୍ ସେଟ୍ ଧରି ଆସିବା । ତାହାହିଁ ହେଲା ଏବଂ ଆମକୁ ପ୍ରତିଦିନ କପ୍ ପ୍ଲେଟ୍ ଓ ବାସନସଂଖ୍ୟା କମିବାର ସମସ୍ୟାରୁ ମୁକ୍ତି ମିଳିଲା ।

ପ୍ରତ୍ୟେକ ସ୍ତ୍ରୀ ଚାହେଁ ତା' ସ୍ୱାମୀ ପାଖରେ ଜ୍ଞାନର ଗାମ୍ଭୀର୍ଯ୍ୟ ଯେତିକି ରହୁ ତା'ଠାରୁ ଅଧିକ ରହୁ ପୌରୁଷ । ଦେହର ଭୋକ ବେଳେ ଅର୍ଥନୀତିର ତତ୍ତ୍ୱ, ମନ ସଙ୍ଗସୁଖ ଖୋଜୁଥିବା ବେଳେ ସେ ଥିବେ ଅନ୍ୟ ଏକ ଗ୍ରହର ମଣିଷ, ଏମିତି ଏକ ପରିସ୍ଥିତିରେ ମୁଁ ଆଦୌ ଖାପ ଖୁଆଇପାରୁ ନ ଥିଲି ନିଜକୁ । ବିଛଣା ଉପରେ ପଡ଼ି ସାରାରାତି ମୁଁ ତାଙ୍କୁ ଅପେକ୍ଷା କରୁଥିବି ଅଥଚ ସେ ପଢ଼ା ଟେବୁଲ୍ ପାଖରେ ବସି ଧ୍ୟାନସ୍ଥ ଥିବେ ତାଙ୍କ ବହିରେ । ଆଉ ଯଦି କେବେ ବାଧ୍ୟବାଧକତାରେ ବିଛଣାକୁ ଆସିବେ ତାଙ୍କ ସହ କେବଳ ଦେହର ଖେଳ ଖେଳି ହେଉଥିଲା ଅଥଚ ମେଣ୍ଟୁ ନ ଥିଲା ଦେହ କିମ୍ବା ମନର ଭୋକ । ପ୍ରବଳ ଶୀତ ରାତିରେ ଦୀପଶିଖା ଜଳି ନିଆଁ ପୋଇଁବା ଭଳି ଅବସ୍ଥା ହେଉଥିଲା ମୋର । ସେତେବେଳେ ମୁଁ ଭାବୁଥିଲି କ'ଣ ସାରାଜୀବନ ମୁଁ ଏପରି ହନ୍ତସନ୍ତ ହେଉଥିବି ।

ମୋର ଭାବନା ପ୍ରତି ତାଙ୍କର ଆଦୌ ସମ୍ମାନ ନ ଥିଲା । ସମ୍ମାନ ନ ଥିଲା କହିଲେ ଭୁଲ ହେବ ବୋଧହୁଏ, କାରଣ ଦେହ ସୁଖ ସଂସାର ବନ୍ଧନର ଏକ ମୁଖ୍ୟ ରଜ୍ଜୁ ବୋଲି ତାଙ୍କର କେବେ ଧାରଣା ନ ଥିଲା । ସ୍ୱାଭାବିକ ଜୈବିକ ତାଡ଼ନାରେ ଯେତିକି ସୁଖ ଦେଇହେଲା ତାହା ଯଥେଷ୍ଟ ବୋଲି ସେ ଧରିନେଇଥିଲେ । ତେବେବି ମଧ୍ୟ ମୁଁ ବିଶ୍ୱାସ ହରାଇ ନ ଥିଲି ଯେ ଏ ଅମଣା ବଳଦ କେବେ ଷଣ୍ଢ ପାଲଟି ପାରିବନି ବୋଲି ।

କିନ୍ତୁ ସେଦିନ ମୋର ସମସ୍ତ ବିଶ୍ୱାସ ଭାଙ୍ଗିଗଲା ଯେଉଁଦିନ ଖୁବ୍ ଖୁସିରେ ଆମ ଶୋଇବା ବିଛଣାରେ ସେ ମୋତେ କହିଲେ- ମୁଁ ଗୋଟେ ଫେଲୋସିପ୍ ପାଇଛି, ଆମେରିକା ଯିବି ପାଞ୍ଚବର୍ଷ ଗବେଷଣାପାଇଁ ।

ମୁଁ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ପଚାରିଲି- କ'ଣ ଏକା ?

ହଁ - ମୋତେ ଏକୁଟିଆ ମିଳିଛି ଫେଲୋସିପ୍ ।

ମୁଁ ଏଠାରେ ଏକୁଟିଆ କିପରି ରହିବି ?

ତମେ ଏଠାରେ ଅଧ୍ୟାପିକା ଅଛ, ରହିବାକୁ ପଡ଼ିବ ନା, ତା'ପରେ ମୁଁ ତ ସବୁଦିନପାଇଁ ଯାଉନି, ପାଞ୍ଚବର୍ଷ ପରେ ପୁଣି ଏଠାକୁ ଫେରିବି ନା ।

ତମେ ତାହେଲେ ଯିବାପାଇଁ ନିଷ୍ପତ୍ତି ନେଇସାରିଛ ?

ହଁ—ଏମିତି ସୁଯୋଗ କ'ଣ ବାରମ୍ବାର ଆସେ । ତେବେ ସେଠାକୁ ଯିବା ପରେ ମୁଁ ଚେଷ୍ଟା କରିବି ଯଦି ତମପାଇଁ ଫେଲୋସିପ୍ ଯୋଗାଡ଼ କରିହୁଏ ତେବେ ଭଲ କଥା ।

ମୋପାଇଁ ତାଙ୍କର ଏ ଉଦାସୀନତା ଯଥେଷ୍ଟ ଥିଲା । ମୁଁ ମନେ ମନେ ସ୍ଥିର କରିନେଲି ନା, ଯଥେଷ୍ଟ ହୋଇଗଲା, ଆଉ ନୁହଁ ।

ସିଏ ସେହି ଯା' ଆମେରିକା ଗଲେ ଆଉ ଫେରିଆସି ନାହାନ୍ତି । ଆମେରିକା ଚାଲିଗଲା ପରେ ତାଙ୍କ ସହ କୌଣସି ଯୋଗାଯୋଗ ରହିପାରିଲା ନାହିଁ । ଏପରିକି ସେ ତାଙ୍କର ଠିକଣା କିମ୍ବା ଟେଲିଫୋନ୍ ନମ୍ବର ମଧ୍ୟ ଦେଇ ନ ଥିଲେ । ସ୍ୱଦେଶରେ ବିବାହିତା ପତ୍ନୀ, ତା' ପ୍ରତି ତାଙ୍କର କୌଣସି ଦାୟିତ୍ୱବୋଧ ଅଛି ବୋଲି ସେ ଚିନ୍ତା କରି ନ ଥିଲେ । ତେଣୁ ଏମିତି ଏକ ମଣିଷକୁ ନେଇ ଯେ ସଂସାର କରିହେବ ଏ ଧାରଣା ମୋ ମନରୁ ଧୀରେ ଧୀରେ ଦୂରେଇ ଯାଉଥିଲା । ତେଣୁ ମୁଁ ବିକଳ୍ପ ପନ୍ଥା ବାଛିଲି - ଦ୍ୱିତୀୟ ବିବାହ ।

ଦ୍ୱିତୀୟ ବିବାହପାଇଁ ମୁଁ ଆଇନତଃ ତାଙ୍କୁ ଡାଇଭୋର୍ସ କରିବାର ଥିଲା । ସେହି ନୋଟିସ୍‌ଟିକୁ ତାଙ୍କ ପାଖକୁ ପଠାଇବାପାଇଁ ମୁଁ କମ୍ ନୟାନ୍ତ ହୋଇ ନ ଥିଲି । ତାଙ୍କ ଲେଖା ବାହାରିଥିବା ବହୁ ପତ୍ରପତ୍ରିକା ଖୋଳାଇବା ପରେ ଠିକଣା ପାଇ ନୋଟିସ୍‌ଟି ପଠାଇଲି । ନୋଟିସ୍‌ଟି ପାଇବାର ପ୍ରାପ୍ତିସ୍ୱୀକାର କାର୍ଡଟି ମୋ ପାଖକୁ ଫେରି ଆସିଥିଲା ଅଥଚ ଆସି ନ ଥିଲା ତାଙ୍କଠାରୁ କୌଣସି ପ୍ରତିକ୍ରିୟା । ଏଥିରୁ ମୁଁ ଧରିନେଇଥିଲି ଯେ ସେ ବୋଧହୁଏ ମୋଠାରୁ ମୁକ୍ତ ହୋଇଯିବାକୁ ଚାହୁଁଥିଲେ ସେଥିପାଇଁ ଫେଲୋସିପ୍ ଆୟୋଜନ କରି ଚାଲିଗଲେ ଆମେରିକା । ଗୋଟିଏ ଟ୍ରେନ୍‌ରେ ପାଖାପାଖି ବସି ଯାତ୍ରା କରୁଥିବା ଦୁଇଜଣ ଅଜଣା ଯାତ୍ରୀ ପରି ଆମେ ପରସ୍ପରର ଗନ୍ତବ୍ୟ ଷ୍ଟେସନ୍‌ରେ ଓହ୍ଲାଇ ପଡ଼ିଲୁ । ସେ ଥିବାବେଳେ ଯେଉଁଟା ଆମର ମେସ୍ ଥିଲା, ସେଇଟା ବଦଳିଗଲା ଆମରି ଘରରେ, ସଂସାରରେ ।

ମଝିରେ ମଝିରେ ତାଙ୍କଦ୍ୱାରା ଲିଖିତ ଏବଂ ଆନ୍ତର୍ଜାତୀୟ ପତ୍ରପତ୍ରିକାରେ ପ୍ରକାଶିତ କିଛି ଲେଖା ମୋ ନଜରକୁ ଆସିଛି । ମାତ୍ର ମୋର ତାଙ୍କ ପ୍ରତି ଏତେ ଘୃଣା ଆସିଯାଇଥିଲା ଯେ ମୁଁ ସେସବୁକୁ କେବେ ଆଡ଼ ଆଖିରେ ଚାହିଁନି । କିଛିବର୍ଷ ତଳେ ତାଙ୍କଦ୍ୱାରା ଲିଖିତ ଗୋଟେ ପୁସ୍ତକ ଆମ ଇଉନିଭରସିଟିର କୋର୍ସରେ ସ୍ଥାନ ପାଇଲା । କାଳେ ସେ ବିଷୟଟି ମୋତେ ପଢ଼ାଇବାକୁ ପଡ଼ିପାରେ ବୋଲି ଭାବି ଯଥେଷ୍ଟ ଚେଷ୍ଟାକରି ମୋଠାରୁ ଦୂରେଇ ରଖିଲି ସେ ବିଷୟକୁ ।

ସେ ଧୀରେ ଧୀରେ ସଫଳତାର ଶିଢ଼ି ଚଢୁଥିଲେ । ମାତ୍ର ତାଙ୍କର ସଫଳତାକୁ ନେଇ ମୋର ଗର୍ବ କରିବା କିମ୍ବା ଈର୍ଷା କରିବା ଭଳି କୌଣସି ଭାବ ମୋ ଭିତରେ ଆସୁ ନ ଥିଲା । ତାଙ୍କର ସଫଳତାକୁ ହେୟ ମନେ କରିବା ସହ ମୁଁ ପ୍ରଶ୍ନ କରୁଥିଲି - ବ୍ୟକ୍ତିଗତ ଜୀବନରେ ବିଫଳ ହୋଇଥିବା ମଣିଷ, ଏମିତି ଆନୁଷ୍ଠାନିକ ସଫଳତା ପାଇବାର ଅର୍ଥ କ'ଣ ?

ସେ ଆନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ଅର୍ଥନୀତିଜ୍ଞ ହେଲେ । ତାଙ୍କର ଜ୍ଞାନ ଓ ଖ୍ୟାତିରେ ପ୍ରଲୁବ୍ଧା ହୋଇ ହେଉ ଅବା ପ୍ରଭାବିତା ହୋଇ ଜଣେ ଗବେଷିକା ତାଙ୍କୁ ବିବାହ କରିବାର ଖବର ସମସ୍ତ ଜାତୀୟ ଓ ଆନ୍ତର୍ଜାତୀୟ ଖବରକାଗଜରେ ପ୍ରକାଶ ପାଇଲା । ସେଦିନ ମୁଁ ଦୁଃଖ କରିଥିଲି, ଈର୍ଷାରେ ନୁହେଁ ବରଂ ସେ ତରୁଣୀଟିର ସାଂସାରିକ ଜୀବନ ଏବଂ ମୋହଭଙ୍ଗ ଦୃଶ୍ୟ ପ୍ରତି ଦୟାରେ ।

ଜୟନ୍ତଙ୍କ ସହ ପାଇଥିବା ପରିପୂର୍ଣ୍ଣ ସଂସାର ସୁଖରେ ମୁଁ ଭୁଲିଯାଇଥିଲି ଅମର୍ତ୍ତ୍ୟଙ୍କ ସହ ମୋ ଜୀବନର କୌଣସି ଏକ ଅଧ୍ୟାୟ ଯୋଡ଼ା ହୋଇ ରହିଛି ବୋଲି । ଆଜି ସେ ବିଶ୍ୱପ୍ରସିଦ୍ଧ ଓ ବିଶ୍ୱର ସର୍ବୋଚ୍ଚ ସମ୍ମାନର ଅଧିକାରୀ ହେବା ପରେ ଆପଣମାନେ ହିଁ ମୋତେ ସ୍ମରଣ କରାଇ ଦେଇଛନ୍ତି ତାଙ୍କ ସହ ମୋର କିଛିଟା ଅତୀତ ଯୋଡ଼ା ହୋଇ ରହିଛି ବୋଲି । ମୁଁ ବର୍ତ୍ତମାନରେ ବଞ୍ଚୁଛି, ସେ ତ ଅତୀତକୁ ସାଇତି ରଖିବା ଭଳି କିଛି ସ୍ମୃତି ମୋ ପାଖରେ ନାହିଁ । ତାଙ୍କର ପ୍ରତିଭା ପ୍ରତି ମୋର ଯଥେଷ୍ଟ ସମ୍ମାନବୋଧ ରହିଛି ମାତ୍ର ତାଙ୍କର ପ୍ରତ୍ୟାଖ୍ୟାନ ପାଇଁ କୌଣସି ଅନୁଶୋଚନା କିମ୍ବା କ୍ଷୋଭ ନାହିଁ । ତାଙ୍କର ବାସନଭଙ୍ଗା ଅଦୌତିରୁ ରକ୍ଷା ପାଇବାପାଇଁ ମୁଁ ଅଭଙ୍ଗା ବାସନ ସେଟ୍‌ଟିଏ କିଣିପାରିଥିଲି ଏବଂ ତାକୁ ଆଜିଯାଏ ମଧ୍ୟ ସାଇତି ରଖିଛି, ହେଲେ ଭଙ୍ଗୁର ମନର ବିକଳ୍ପଟିଏ ପାଇଲି ନାହିଁ ବୋଲି ତ ଭାଙ୍ଗିଗଲା ଆମର ବୈବାହିକ ଜୀବନ, ଯେଉଁଥିପାଇଁ ଆଜି ମିଳିଛି ମୋତେ ସ୍ମୃତି ଚାରଣର ସୁଯୋଗ ।

# ସ୍ୱପ୍ନବିଳାସ

ଖୁବ୍ ତରବରରେ ମୁଁ ଫେରୁଥିଲି ସ୍କୁଟରରେ । ହଠାତ୍ ପଛରୁ କିଏ ଜଣେ ଡାକିଲେ - ବିପିନ୍‌ବାବୁ ! ବିପିନ୍‌ବାବୁ ! ଚିହ୍ନା ସ୍ୱର ବାରି ମୁଁ ସ୍କୁଟର ସ୍ଲୋ କରି ପଛକୁ ଦେଖିଲି । ଗୋଟିଏ ପାନଦୋକାନର ବେଞ୍ଚ ଉପରୁ ମୋତେ ହାତ ହଲାଇ ପୁନଶ୍ଚ ଡାକିଲେ - କୁଆଡ଼େ ଏକମୁହାଁ ଛୁଟିଛନ୍ତି ମ, ଆସନ୍ତୁ ।

ମରିଲା ମଣିଷ - ଏଇନା ଘଣ୍ଟାଏ ନେବେ । ମୁଁ ସ୍କୁଟର ନ ବୁଲାଇ କହିଲି, ଆଜି ଭାରି ବ୍ୟସ୍ତରେ ଅଛି ।

ବ୍ୟସ୍ତ କ'ଣ ମ - ଆସନ୍ତୁ ପାନଖଣ୍ଡେ ତ ଖାଇକରି ଯିବେ । ବଳଭଦ୍ରବାବୁ ଡାକୁଛନ୍ତି । ସହଜେ ଏଡ଼ାଇ ଯାଇ ହେବନି । ବଳଭଦ୍ରବାବୁ ମାନେ ଡଃ ବଳଭଦ୍ର ରଥ । ପ୍ରାଧାପକ ଓ ବିଭାଗୀୟ ମୁଖ୍ୟ ଭାବେ ଦୁଇବର୍ଷ ତଳୁ ଏହି ସହରର ଏକ ସରକାରୀ କଲେଜରୁ ଅବସର ନେଇଛନ୍ତି, ଯଦିଓ ଆମେ କେବେ ସହକର୍ମୀ ନ ଥିଲୁ, ଏକା କଲେଜରେ ଚାକିରି କରି ନ ଥିଲୁ କିମ୍ବା ବିଭାଗ ଏକା ନ ଥିଲା, ତଥାପି ବୃତ୍ତିଗତ ସାମ୍ୟପାଇଁ ସଂପର୍କଟା ଥିଲା ଖୁବ୍ ନିବିଡ଼ । ସେ ଥିଲେ ଇତିହାସ ବିଭାଗର ଓ ମୁଁ ଥିଲି ଅର୍ଥନୀତି ବିଭାଗର । କିନ୍ତୁ ଏ ସବୁ ଉର୍ଦ୍ଧ୍ୱରେ ଆମ ଉଭୟଙ୍କ ମଧରେ ଗଢ଼ି ଉଠିଥିଲା ଏକ ଶିକ୍ଷାବିତ୍‌ର ସଂପର୍କ ।

ଯେଉଁଦିନ ତାଙ୍କଠାରୁ ମୁଁ ଶୁଣିଲି ସେ ଆଉ ମାତ୍ର ଦୁଇ ମାସ ପରେ ଅବସର ନେବାକୁ ଯାଉଛନ୍ତି, ସେଦିନ ତାଙ୍କୁ କହିଥିଲି ବୟସର ଦ୍ୱାହି ଦେଇ ସରକାର ଆପଣଙ୍କୁ ସିନା ଅବସର ଦେବାକୁ ଯାଉଛନ୍ତି, ହେଲେ ଆପଣଙ୍କୁ ଦେଖିଲେ କେହି କ'ଣ ବିଶ୍ୱାସ କରିବ ଯେ ଆପଣ ଅବସର ନେବାକୁ ଯାଉଛନ୍ତି ବୋଲି ! ମୋର ଏ କମ୍ପ୍ଲିମେଣ୍ଟସ ପରେ ସେ ଏକ ଦୀର୍ଘଶ୍ୱାସ ଛାଡ଼ି କହିଥିଲେ - କେଉଁ ଜନ୍ମର ପାପ ଫଳ ଥିଲା ବୋଲି ତ ଗୋଟିଏ ଅଶିକ୍ଷିତ ପରିବାରରେ ଜନ୍ମ ହେଲି। ଚାଟଶାଳୀ ପଢ଼ା ସାରି ସ୍କୁଲରେ ନାଆଁ ଲେଖାଇବାକୁ ବାପା ବି ଯାଇପାରିଲେ ନାହିଁ ସାଙ୍ଗରେ । ପଠାଇ ଦେଇଥିଲେ ଆମ ଘରର ହଳିଆକୁ। ସେବା କ'ଣ ଜାଣେ? ଶିକ୍ଷକ ଯେତେବେଳେ ପଚାରିଲେ କେତେ ବର୍ଷ ହେଲାଣି ଯାକୁ, ସେ କହିଲା ହଁ ଏଡ଼େ ବଡ଼ ଟୋକାଟିଏ ହେଲାଣି, ବୟସ ଦଶ ବାର ବର୍ଷ ତ ହୋଇଥିବ ନିଶ୍ଚୟ । ସେଇଠୁ ସେ ଲେଖିଦେଲେ ବୟସ ବାରବର୍ଷ । ଦ୍ୱିତୀୟ ଶ୍ରେଣୀରେ ନାଆଁ ଲେଖାଇବା ବେଳକୁ ବୟସ ବାରବର୍ଷ । ସେଠି ପାଞ୍ଚବର୍ଷ ବୟସ ବଢ଼ି ଯାଇ ନ ଥିଲେ ଏବେ କେତେ କ'ଣ ଉପରକୁ ଉଠିଯାଇ ହୋଇଥାଆନ୍ତା । କମ୍ ସେ କମ୍ ପ୍ରଫେସର କିମ୍ବା ଡି.ପି.ଆଇ. ପର୍ଯ୍ୟନ୍ତ ତ ଯାଇ ପାରିଥାଆନ୍ତି ।

ହଉ ଯାହା ତ ହେବାର ହୋଇସାରିଛି, ତାକୁ ଆଉ ଏବେ ଭାବି ଲାଭ କ'ଣ ?

ସତକଥା ଯେ, ତଥାପି ମୁଁ ମୋର ପ୍ରକୃତ ବୟସର ଜାତକ ନେଇ ଶିକ୍ଷା ବିଭାଗକୁ ଆପ୍ଲାଏ କରିଛି ମୋର ବୟସ ସଂଶୋଧନପାଇଁ ।

ସେମିତି କ'ଣ ହେବା ସମ୍ଭବ ?

କଉଟା ଅସମ୍ଭବ ଏଠି, ଖାଲି କ'ଣ ମୁଁ ଏକା । ଏବେ ତ ଆଉ ଦୁଇ ତିନିଜଣ ଆଇ.ଏ.ଏସ୍. ଅଫିସର ମଧ ତାଙ୍କର ଜାତକ ବୟସ ଅନୁଯାୟୀ ସାର୍ଟିଫିକେଟ୍ ବୟସ କରିବାପାଇଁ ଆପ୍ଲାଏ କରିଛନ୍ତି । ଯଦି ସେମାନଙ୍କ କଥା ବିଚାର ହୁଏ ତେବେ ମୋ'ଟା ନିଶ୍ଚୟ ହୋଇଯିବ ବୋଲି ମୁଁ ଭାବୁଛି । ମଜା କଥା ହେଲା ଯେଉଁ ଆଇ.ଏ.ଏସ୍. ଅଫିସର ତାଙ୍କ ବୟସକୁ ରେକ୍ଟିଫାଏ କରିବାକୁ ଲାଗିଛନ୍ତି, ଯଦି ତାଙ୍କଟା ହୋଇଯାଏ ତେବେ ବର୍ଷକପାଇଁ ଅନ୍ତତଃ ଚିଫ୍ ସେକ୍ରେଟାରୀ ହୋଇ ସେ ରିଟାୟାର୍ଡ କରିବେ । ମୁଁ ତ ଭାବୁଛି ସେ ତାଙ୍କର କ୍ଷମତାର ଉପଯୋଗ କରି ଅନ୍ତତଃ ଏତକ କରାଇପାରିବେ । ଆଉ ତାଙ୍କର ଯଦି ହୋଇଗଲା ସେହି ପ୍ରିସିଡେଣ୍ଟରେ ତ ଆମେ ମାଡ଼ି ବସିବା କଥା ।

ହଇହୋ ବିପିନ୍‌ବାବୁ—କୁଆଡ଼େ ଏମିତି ଏକମୁହାଁ ଧାଇଁଥିଲେ ମ ?

ମୁଁ ସ୍କୁଟର ବୁଲାଇ ପାନଦୋକାନ ପାଖରେ ପହଞ୍ଚିବାକ୍ଷଣି ଏ ପ୍ରଶ୍ନ ସହ ମୋ ପାଇଁ ପାନ ବରାଦ କରି ଦେଇ ମୋ ସ୍କୁଟର ପାଖକୁ ଚାଲି ଆସିଲେ ।

ବୁଝିଲେ ବିପିନ୍‌ବାବୁ! ମୁଁ କହୁଥିଲି ନା ଜ୍ଞାନର ମୂଲ୍ୟବୋଧ ଚିରକାଳ ରହିବ । ବିଳମ୍ବରେ ହେଲେ ମଧ ଲୋକେ ଜ୍ଞାନକୁ ଖୋଜିବେ, ଜ୍ଞାନୀକୁ ଚିହ୍ନିବେ । ମୋତେ ସିନା ଅବସର ଦେଇଦେଲେ, ଏବେ ଦେଖ ।

କ'ଣ ସାର୍, ଜାତକ ବୟସ ଅନୁଯାୟୀ ସାର୍ଟିଫିକେଟ୍ ବୟସ ହୋଇଗଲା କି ?

ନାଇଁମ - ସେ ବିଷୟରେ ମୁଣ୍ଡ ଖେଳାଇବାକୁ ମୁଁ କ'ଣ ଆଉ ସମୟ ପାଇଛି । ଛାଡ଼, ଆଉ ପାଞ୍ଚ ବର୍ଷ ପ୍ରାଧାପକ ଆୟୁଷ ବଢ଼ି ଯାଇଥିଲେ କ'ଣ ହାତୀ - ଘୋଡ଼ା ମିଳିଯାଇଥାଆନ୍ତା । ତିରିଶ୍ ବର୍ଷରେ ଯଦି ପେଟ ପୂରିଲା ନାହିଁ, ଆଉ ପାଞ୍ଚ ବର୍ଷରେ କ'ଣ ପେଟ ପୂରି ଯାଇଥାଆନ୍ତା । ମୁଁ ସେ ବିଷୟରେ ଏବେ ଚିନ୍ତା କରୁନି । ବୁଝିଲେ, ଏଇ ଅଳ୍ପଦିନ ତଳେ ମୁଁ ଯାଇଥିଲି ଭୁବନେଶ୍ୱର - ସର୍ବଭାରତୀୟ ଇତିହାସ କଂଗ୍ରେସ୍‌ର ଗୋଟେ ଆଲୋଚନା ଚକ୍ରରେ ଯୋଗ ଦେବାପାଇଁ ଷ୍ଟେଟ୍ ଗେଷ୍ଟ ହାଉସ୍‌ରେ ରହିବାର ବ୍ୟବସ୍ଥା କରିଥିଲେ ସେମାନେ । ମିଟିଂରେ ମୋର ଆଲୋଚନା ଓ ଇତିହାସ ସଂପର୍କରେ ମୌଳିକ ଦୃଷ୍ଟିଭଂଗୀ ସମସ୍ତଙ୍କୁ ବିସ୍ମିତ କରିଥିଲା । ମୋର

ଅଭିଭାଷଣ ପରେ ତ ମୁଁ ହିଁ ପାଲଟି ଯାଇଥିଲି ସମସ୍ତଙ୍କର ମୁଖ୍ୟ ଆକର୍ଷଣ ଓ ଆଲୋଚନାର ବିନ୍ଦୁ ।

ମୁଁ ତାଙ୍କୁ ଉତ୍ସାହିତ କରିବାପାଇଁ କହିଲି - ଆପଣ ତ ସେସବୁର ଯୋଗ୍ୟ ।

ଜାଣିଲେ - କେତେକ ତ କହୁଥିବାର ମୁଁ ଶୁଣିଲି ଯେ ଏମିତି ଏକ ବିଜ୍ଞ ଲୋକର ଐତିହାସିକ ଜ୍ଞାନକୁ ଓଡ଼ିଶା ବ୍ୟବହାର କରିପାରିଲା ନାହିଁ । ମୁଁ ଏ ବିଷୟରେ ଆପଣଙ୍କୁ ବହୁବାର କହିଛି ନା ନାହିଁ ? ମୁଁ କ'ଣ, ଆପଣ କ'ଣ, ଓଡ଼ିଶାରେ ଜନ୍ମ ହେବାଟା ହିଁ ଆମପାଇଁ ଗୋଟେ ଗୋଟେ ଅଭିଶାପ ।

ଛାଡ଼ନ୍ତୁ ବଳଭଦ୍ରବାବୁ - ଲୋକଙ୍କୁ ନ ନିନ୍ଦି ମାଟିକୁ ନିନ୍ଦି ଲାଭ କ'ଣ ?

ଠିକ୍ କଥା କହିଲେ—ଆମେ ତ ଓଡ଼ିଆ କଙ୍କଡ଼ା, ପରସ୍ପରର ଗୋଡ଼ ଟଣା ଟଣିରେ ବ୍ୟସ୍ତ । ଅଥଚ ଦେଖନ୍ତୁ ଓଡ଼ିଶା ବାହାରୁ ଆସିଥିବା ଐତିହାସିକମାନେ ସେହି ସଭାରେ ହିଁ ନିଷ୍ପତ୍ତି ନେଇ କେନ୍ଦ୍ର ସରକାରଙ୍କୁ ଗୋଟେ ପ୍ରସ୍ତାବ ପଠାଇଲେ । ସଂପ୍ରତି ଇତିହାସକୁ ପୁନଃ ସଂକଳିତ କରିବାକୁ ସରକାର ଯେଉଁ ପ୍ରସ୍ତାବ ରଖିଛନ୍ତି ସେଥିରେ ଡଃ ବଳଭଦ୍ର ରଥଙ୍କୁ ରଖାଗଲେ ଭାରତର ଅନାଲୋଚିତ ଐତିହାସିକ ତଥ୍ୟକୁ ଠିକ୍ ନ୍ୟାୟ ପ୍ରଦାନ କରିହେବ ।

ଇତିହାସକୁ ପୁନଃ ସଂକଳିତ କରିବାକୁ କ'ଣ ସେମିତି କିଛି ଯୋଜନା ଅଛି କି ?

ଆରେ - ଆପଣ କେଉଁଠି ଅଛନ୍ତି ? ଏ ଗ୍ରହରେ ନାହାନ୍ତି ନା କ'ଣ ? ଏତେ ବାକ୍‌ବିତଣ୍ଡା ଚାଲିଛି । ବିରୋଧୀ ଦଳ ଚିଲାଉ ଅଛନ୍ତି ଇତିହାସକୁ ସାଫ୍ରୋନାଇଜ୍ କରି ଦିଆଯାଉଛି ବୋଲି, ଆପଣ କ'ଣ କିଛି ଜାଣିପାରୁ ନାହାନ୍ତି ?

ହଁ, ହଁ, ମୁଁ ସେ ବିଷୟରେ ଶୁଣିଛି ।

ବୁଝିଲେ - ଅଖିଳ ଭାରତୀୟ ଇତିହାସ କଂଗ୍ରେସର ଯେଉଁମାନେ ମୋ ନାଆଁର ପ୍ରସ୍ତାବ କେନ୍ଦ୍ର ସରକାରଙ୍କୁ ଦେଇଛନ୍ତି, ମୁଁ ତ ଭାବୁଛି କେନ୍ଦ୍ର ସରକାରଙ୍କର ସେମାନଙ୍କ କଥାକୁ କାଟିବାର ଜୁ ନ ଥିବ । ଯଦି ସେମାନଙ୍କ ପ୍ରସ୍ତାବ ଗୃହୀତ ହୋଇଗଲା ତେବେ ଦିଲ୍ଲୀ ଯାଇ ମୁଁ ଇତିହାସର ନକ୍‌ସା ବଦଳାଇ ଦେବି !

ଆରେ ରଘୁ ! ପାନ ହେଲା ନା ? ରଘୁ ପାନ ବଢ଼ାଇଦେଲା । ମୁଁ ଭାବିଥିଲି ପାନ ମିଳିବା ପରେ ବୋଧହୁଏ ତାଙ୍କ ଭାଷଣ ଶୁଣିବାରୁ ମୋତେ ଅବ୍ୟାହତି ମିଳିବ । ମାତ୍ର ପାନ ପାଟିରେ ପୂରାଉ ପୂରାଉ ସେ ତତ୍‌କ୍ଷଣାତ୍ ଆରମ୍ଭ କରିଦେଲେ- ବୁଝିଲେ ବିପିନ୍‌ବାବୁ, ସେଇ ଭୁବନେଶ୍ୱରର ରହଣି କାଳରେ ଆଉ ଗୋଟେ ମଜା ଓ ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଲା । ବହୁତ ଦିନ ପରେ ତ ମୁଁ ଭୁବନେଶ୍ୱର ଯାଇଥିଲି । ହଠାତ୍ କୋଉ ଫେରି ହେଉଛି । ଏସବୁ ମିଟିଂ ଫିଟିଂ ଧନ୍ଦା

ସରିବା ପରେ ଦିନେ ଅପରାହ୍ଣରେ ମୁଁ ଗଲି ଧଉଳିଗିରି । ସେ ମାଟିର ଧୂଳିକଣା ହିଁ ତ ଇତିହାସର ଗୋଟେ ଗୋଟେ ଅଧ୍ୟାୟ । ସେ ମାଟିକୁ ଛୁଇଁ, ସେ ଶିଳାଲେଖକୁ ପଢ଼ି, ସେସମୟର ଇତିହାସକୁ ଟିକେ ଉପଲ୍‌ବଧି କରିବାପାଇଁ ମୁଁ ଯାଇଥିଲି, ଯେଉଁ ସବୁ ସ୍ଥାନକୁ ମୋର ଗଭୀର ଭାବରେ ଉପଲବ୍‌ଧି କରିବାର ଥାଏ, ମୁଁ ସେଠାକୁ ଏକା ଏକା ଯାଏ । ମୁଁ ସେଠାରେ ଏକା ଏକା ବୁଲୁଛି, ଦେଖିଲି ଗୋଟିଏ ଶିଳାଲେଖ ପାଖରେ ଛିଡ଼ା ହୋଇ ଡଃ ଯୋଶୀ କାହାକୁ ଗୋଟେ ବୁଝାଇବାରେ ଲାଗିଛନ୍ତି । ଡଃ ଯୋଶୀ କିଏ ଜାଣିଛନ୍ତି ତ ?

ମୁଁ ମୁଣ୍ଡ ହଲାଇ ନାହିଁ କଲି ।

ଆରେ ତାଙ୍କୁ ଚିହ୍ନି ନାହାନ୍ତି - ସେ ପରା ଆମ ରାଜ୍ୟ ସଂଗ୍ରହାଳୟର ନିର୍ଦ୍ଦେଶକ । ସେ ବୁଝାଇବାରେ ଲାଗିଥାଆନ୍ତି ଏକ ଧ୍ୟାନରେ । ମୁଁ ଯାଇ ସେଇ ପାଖରେ ଛିଡ଼ା ହେଲି । ମୋତେ ଡଃ ଯୋଶୀ ଚିହ୍ନି ପାରିଲେ ନାହିଁ । ମୋତେ ଯେ ଚିହ୍ନିପାରି ନ ଥିବେ ଏମିତିକା କଥା ନୁହେଁ । ମାତ୍ର ସେ ନ ଚିହ୍ନିବା ପରି ହେଲା । ମୁଁ ବି ମନେ ମନେ ଭାବିଲି ହଉ ବାପ, ଦେଖିବା ଇତିହାସ ସଂପର୍କରେ ତମର ଜ୍ଞାନକୁ ।

ସେ ଏକଲୟରେ ବୁଝାଇ ଚାଲିଥାଏ । ଯାହାଙ୍କୁ ବୁଝାଉଥାଏ ତାଙ୍କର ହାବଭାବ ଓ ଥାଟବାଟରୁ ମୁଁ ଅନୁମାନ କରୁଥାଏ ଇଏ ନିଶ୍ଚୟ କେଉଁ ଦେଶରୁ ଆସିଥିବା ଜଣେ ଭି.ଆଇ.ପି. । ସେ ତାଙ୍କୁ ବୁଝାଉ ବୁଝାଉ ଗୁଡ଼ିଏ ଭୁଲ ତଥ୍ୟ ଦେଉଥାଏ ଅଶୋକ ଓ କଳିଙ୍ଗ ଯୁଦ୍ଧ ସଂପର୍କରେ । ମୁଁ ତ ଆଉ ସମ୍ଭାଳି ପାରିଲି ନାହିଁ । ମୋ ପାଟିରୁ ବାହାରି ପଡ଼ିଲା - ଏକ୍ସକ୍ୟୁଜ୍ ମି ମିଃ ଯୋଶୀ, ୟୁ ଆର ନଟ୍ ରାଇଟ୍ । ଯୋଶୀ ତ ମୋ କଥା ଶୁଣି ମୋ ମୁହଁକୁ ହାଁ କରି ଚାହିଁଲା । ମୁଁ ତାଙ୍କୁ କହିଲି— ଏଠି ଯାହା ଲେଖାଯାଇଛି ତା'ର ତର୍ଜମା ତ ହଜାରବାର ହୋଇସାରିଲାଣି । ପ୍ରତ୍ୟେକ ଇତିହାସର କିଛି ଅଲିଖିତ ଇତିହାସ ଥାଏ । ତାକୁ କୁହା ନ ଗଲେ କହୁଥିବା ଇତିହାସ ସଂପୂର୍ଣ୍ଣ ହୋଇପାରେନା । ଆପଣ ତ ସେ ବିଷୟରେ ବିଲକୁଲ ଉଲ୍ଲେଖ କରୁ ନାହାନ୍ତି ।

ଶୁଣୁଥିବା ଲୋକଜଣକ ମୋ କଥା ଶୁଣି କହିଲେ - ରାଇଟ୍, ରାଇଟ୍ । ମେ ଆଇ ନୋ ୟୁ ଜେଣ୍ଟଲମ୍ୟାନ୍ ?

ମୋ ପରିଚୟ ଜାଣିବା ପରେ ସେ ମୋତେ ଅନୁରୋଧ କଲେ ଧଉଳିଗିରିର ଐତିହାସିକ ବିଶେଷତ୍ୱ ବିଷୟରେ କହିବାପାଇଁ ।

ଇତିହାସ ଭିତରେ ଲୁଚି ରହିଥିବା ମାନବିକ ଆବେଦନ, ସାହିତ୍ୟ, ସଂସ୍କୃତି, କଳା ଓ ପରମ୍ପରାକୁ । ମୁଁ ତାଙ୍କୁ ଯେମିତି ବୁଝାଇ ଦେଇଛି ସେ ଏତେ ଖୁସି ହୋଇଗଲେ ଯେ ତାକୁ କହିହେବ ନାହିଁ । ସେ ମୋତେ କ'ଣ କହିଲେ ଜାଣନ୍ତି ?

କହିଲେ - ଆଇ ହାଭ୍ ସିନ୍ ରେଆର ଟ୍ୟାଲେଣ୍ଟ ଲାଇକ୍ ୟୁ । ଏହା ପରେ ସେ ମୋ ହାତକୁ ବଢ଼ାଇଦେଲେ ତାଙ୍କର ଭିଜିଟିଂ କାର୍ଡରୁ ଗୋଟେ । ତାଙ୍କର କାର୍ଡ ଦେଖି ମୋର ସଂଭ୍ରମତା ବଢ଼ିଗଲା । ସେ କିଏ ଥିଲେ ଜାଣନ୍ତି ? ରୋମ୍‌ର ସଂସ୍କୃତି ମନ୍ତ୍ରୀ । ଗୋଟିଏ ସଂସ୍କୃତିପ୍ରିୟ ଦେଶର ସଂସ୍କୃତି ମନ୍ତ୍ରୀଙ୍କଠାରୁ ଏକଥା ଶୁଣିବା କ'ଣ ଛୋଟିଆ କଥା ।

ତା' ପରେ ମୋତେ ସେ ମୋର ଆଡ୍ରେସ୍ ମାଗିଲେ । ମୋ ଆଡ୍ରେସ୍ ନେଇ ସାରି କହିଲେ - ଆମ ଦେଶରେ ଗୋଟିଏ ହେରିଟେଜ୍ ଷ୍ଟଡି ଚାଲିଛି । ଆପଣଙ୍କ ଭଳି ଜଣେ ଟ୍ୟାଲେଣ୍ଟେଡ୍ ଲୋକ ସେଥିରେ ସାମିଲ୍ ହୋଇ ସହଯୋଗ କରି ପାରିଲେ ଆମେ ଖୁସି ହେବୁ । ସଂସ୍କୃତି ମନ୍ତ୍ରୀ ହିସାବରେ ମୁଁ ଆପଣଙ୍କୁ ଆମନ୍ତ୍ରଣ କରୁଛି ଆମ ଦେଶକୁ । ଆପଣ ଯଦି ମୋ ପ୍ରସ୍ତାବରେ ରାଜି ତେବେ ପ୍ରସ୍ତୁତ ହୋଇ ରୁହନ୍ତୁ । ଖୁବ୍ ଶୀଘ୍ର ଆପଣଙ୍କପାଇଁ ଭିସା, ପାସ୍‌ପୋର୍ଟ ସହ ଆପଣଙ୍କର ଆପଏଣ୍ଟମେଣ୍ଟ ଲେଟର ପଠାଇବୁ । ମୁଁ ତ ଆଶା କରୁଛି ଏହି ଅଳ୍ପଦିନ ମଧ୍ୟରେ ସେସବୁ ଆସି ପହଞ୍ଚିଯିବ୍ ବୋଲି । ଦେଖାଯାଉ ଇତିହାସ କୁଆଡ଼େ ମୋଡ଼ ବଦଳାଉ ଅଛି ।

ମୁଁ ତାଙ୍କୁ ଆହୁରି ଉତ୍ସାହିତ କରିବାପାଇଁ କହିଲି - ବୁଝିଲେ ରଥବାବୁ ! ଇଏଁ ଏକ ବିରଳ ସୁଯୋଗ । ଏହାକୁ ହାତଛଡ଼ା କରନ୍ତୁ ନାହିଁ । ଅନ୍ୟ ଐତିହାସିକ ମାନେ ରୋମ୍‌ର ଗରିମାମୟ ଇତିହାସ ଓ ପିରାମିଡ୍‌ର ବାସ୍ତୁ କଳା ଉପରେ ଧ୍ୟାନ ଦେଇ ଆସିଛନ୍ତି କିନ୍ତୁ ଇତିହାସ ଭିତରେ ଥିବା ଇତିହାସକୁ ସେମାନେ ଧ୍ୟାନ ଦେଇ ନାହାନ୍ତି । ପିରାମିଡ୍ ତଳେ ଚାପି ହୋଇ ରହିଥିବା 'ମମି'ମାନଙ୍କର ଇତିହାସକୁ ଆପଣ ଉନ୍ମୋଚନ କରନ୍ତୁ । ଦେଖିବେ ସାରା ବିଶ୍ୱ ଚମତ୍କୃତ ହେବ ଆପଣଙ୍କର ଐତିହାସିକ ଦୃଷ୍ଟିଭଙ୍ଗୀରେ ।

ହଁ - କିଛି ତ ଗୋଟିଏ ନୂଆ ଓ ନିଆରା କରିବାର ଅଭୀପ୍‌ସା ନେଇ ମୁଁ ଆଜିଯାଏ ବଞ୍ଚି ଆସିଛି । ଦେଖାଯାଉ କ'ଣ ହେଉଛି ।

ଏତିକିବେଳେ ତାଙ୍କଠାରୁ ବିଦାୟ ମାଗିବା ପ୍ରକୃଷ୍ଟ ମୁହୂର୍ତ୍ତ ଜାଣି ମୁଁ କହିଲି, ରଥବାବୁ ! ମୁଁ ଟିକିଏ ବ୍ୟସ୍ତତା ମଧ୍ୟରେ ଅଛି, ଯାଉଛି ।

ଯିବେ ତ ବ୍ୟସ୍ତ କାହିଁକି ?

ବ୍ୟସ୍ତ ହେବାର କିଛି ନାହିଁ ଯେ ବମ୍ବେରୁ ଝିଅ ଜ୍ୱାଇଁ ଆସିଛନ୍ତି । ସେମାନେ ଆଜି ରାତିରେ ଫେରିଯିବେ । ସେମାନଙ୍କର ଫେରିବା ପ୍ରସ୍ତୁତି ନେଇ ମୁଁ ଟିକିଏ ବ୍ୟସ୍ତ ।

ଆରେ ଭଲ କଥାଟିଏ ମନରେ ପକାଇଦେଲେ । ଆପଣଙ୍କ ଜ୍ୱାଇଁ ତ ବମ୍ବେରେ ରହୁଛନ୍ତି । ଆମ ମନୁ—ମନୋରଂଜନ, ଏଇ କିଛି ଦିନ ହେଲା ବମ୍ବେରେ ଯାଇ ରହୁଛି । ଆଇ.ଆଇ.ଏଫ୍.ଟି. ରୁ ପାସ୍ କରିବା ପରେ ଏବେ ଯାଇ କେଉଁ ଜଣେ ଡାଇରେକ୍ଟରଙ୍କ ପାଖରେ ଆସିଷ୍ଟାଣ୍ଟ ରୂପେ କାମ କରୁଛି । ଆପଣ ତ ଜାଣିଥିବେ ଫିଲ୍ମ ଇଣ୍ଡଷ୍ଟ୍ରିରେ ପ୍ରବଳ ପଇସା, ଆସିଷ୍ଟାଣ୍ଟ ହେଲେ ମଧ ଢେର ପଇସା ପାଉଛି । ହେଲେ କ'ଣ ହେବ ସେ ଗୁପେଲି ଜଗତର ସାନ୍ ଓ ସୌକତରେ ତ ତା'ର ସବୁ ପଇସା ଉଡ଼ି ଯାଉଛି । ବହୁ ସେଲିବ୍ରେଟି ଆର୍ଟିଷ୍ଟ ଓ ଡାଇରେକ୍ଟରଙ୍କ ସହ ତା'ର ଖୁବ୍ ଭଲ ସଂପର୍କ । ମଣିରତ୍ନମ୍ ଓ ଅଦୂର ଗୋପାଳକ୍ରୀଷ୍ଣନ୍ ଯାକୁ ଖୁବ୍ ଲାଇକ୍ କରନ୍ତି । ଏହାର ଦୃଷ୍ଟିଭଂଗୀରେ କୁଆଡ଼େ ଖୁବ୍ ମୌଳିକତା ଅଛି ବୋଲି ସେମାନେ କୁହନ୍ତି । ମଝିରେ ମଝିରେ ଚିଠି ଦେଇ ତା'ର ସଫଳତା ବିଷୟରେ ଲେଖେ । ଥରେ ଲେଖିଲା ! ବାପା—ମୁଁ ମୋର ଡାଇରେକ୍ଟୋରାଲ ଡେବ୍ୟୁ ଗୋଟେ ଡକ୍ୟୁମେଣ୍ଟାରୀ ଫିଲ୍ମରେ କରିବି । ତା'ର ନାଆଁ ରଖିଛି - 'ହିଷ୍ଟ୍ରି ବିୟୋଣ୍ଡ ହିଷ୍ଟ୍ରି' । ମୋତେ ସ୍କ୍ରିପ୍ଟପାଇଁ ବରାଦ କରି ସେ ଏବେ ସାଇଟ୍ ସିଲେକ୍‌ସନ୍‌ରେ ଲାଗିଛି । ଏ ପ୍ରସ୍ତାବରେ ମୋତେ ବହୁତ ଖୁସି ଲାଗିଲା । ଜଣେ ଐତିହାସିକ ପିତାର ରକ୍ତ ତା' ଦେହରେ ପ୍ରବାହିତ ହେଉଛି ଦେଖି । ମୁଁ ବି ତା'ପାଇଁ ଯେଉଁ ସ୍କ୍ରିପ୍ଟ ଲେଖୁଛି ତାହା ନିଶ୍ଚୟ ଡକ୍ୟୁମେଣ୍ଟାରୀ ଜଗତରେ ଚହଳ ପକାଇବ ।

ଏଥିପାଇଁ ତ ଗୁଡ଼ାଏ ଟଙ୍କା ଖର୍ଚ୍ଚ ହେବ ?

ହଁ, ଟଙ୍କା ତ ନିଶ୍ଚେ ଖର୍ଚ୍ଚ ହେବ । ଜାଣିଲେ, ଟଙ୍କା ବମ୍ବେର ପବନରେ ଉଡୁଛି । ସେଇଟା କ'ଣ ଓଡ଼ିଶା ହୋଇଛି ? ଯିଏ ବୁଦ୍ଧି କରିପାରିଲା ସେ ସେଠି ଟଙ୍କା ସାଉଁଟିଲା ।

ମନୁ ଆପଣଙ୍କ ପାଖକୁ ଟଙ୍କାପଇସା ପଠାଉଛି କି ନାହିଁ ?

ନା - ପଠାଇ ନାହିଁ ଯେ ମୋର ଗ୍ରାଚ୍ୟୁଇଟି ଓ ପେନ୍‌ସନ୍ ମିଳିବାରେ ଯେତେବେଳେ ବିଳମ୍ବ ହେଲା ସେ ସେତେବେଳେ ଲେଖିଥିଲା - ବାପା ! ଟଙ୍କା ଦରକାର ହେଲେ ମୋତେ କହିବେ । ମୁଁ ଲକ୍ଷେ ଦୁଇ ଲକ୍ଷ ଟଙ୍କା ରେମିଟ୍ କରିଦେବି ମୋ ଏକାଉଣ୍ଟରୁ ତମ ଏକାଉଣ୍ଟକୁ । ତା' ମାଆ ଏକଥା ପଢ଼ି ମୋ ଉପରେ ରାଗ ଗରଗର ହେଲା । କହିଲା— ତମେ ଜୀବନ ସାରା ପାଠ ପଢ଼ାଇ ପଢ଼ାଇ ତ ଯାହା କରିପକାଇଲ - ପେନ୍‌ସନ୍ ରେଡି ହୋଇନି ବୋଲି ସାତ ଆଠଟା ମାସରେ ତମ ରଥ ଚକ ଅଟକିଲାଣି । ମୋ ପିଲାଙ୍କୁ କ'ଣ ସେଇଆ ହେବାକୁ ଦେବ ନା କ'ଣ ? ତମ ଅସୁବିଧା ତମଠେଇ । ତାକୁ ଛାଡ଼ିଦିଅ । ସେ ଉଠୁ, କେତେ ଉପରକୁ ଉଠୁଛି ଉଠୁ, ଆକାଶକୁ ଛୁଉଁ । ଏବେଠୁ ପଇସା ମାଗି ତା' ମୁଣ୍ଡରେ ବୋଝ

ଦିଅ ନାହିଁ । ବାସ୍, ତା'ପରେ ମୁଁ ଆଉ କେବେ ତାକୁ ପଇସା କଥା କହି ନାହିଁ । ହଁ - ଅସଲ କଥାଟା ଭୁଲି କେତେ କୁଆଡ଼େ ମାଡ଼ିଗଲିଣି । ଆପଣଙ୍କ ଜ୍ୱାଇଁ ପରା ସେଠି ଇଂଜିନିୟର । କହିବେ ଚିହ୍ନା ପରିଚୟ ହେବେ । ଦାୟ ଦରକାରରେ କାମରେ ଆସିବ ।

ମନୁର ଠିକଣା ଦିଅନ୍ତୁ ।

ତା'ର ଠିକଣା କ'ଣ ମନରେ ଅଛି । ହଉ ସେମାନେ ରାତି ଟ୍ରେନ୍‌ରେ ଯିବେ ତ, ମୁଁ ପହଞ୍ଚାଇ ଦେବି । ଏଇଠୁ କଥା ସରିଲା ଭାବି ମୁଁ ସ୍କୁଟରଆଡ଼େ ମୁହଁ ବୁଲାଇଛି କି ନାହିଁ ସେ କହିଲେ, ହଁ - ଆଉ ଗୋଟେ କଥା । ଆପଣ ତ ଖୁବ୍ ଶସ୍ତାରେ ଶସ୍ତାରେ ଶୁଖିଲାରେ ରୋହିମାଛଟିଏ ମାଡ଼ିବସିଲେ । ଆମ କଥା ଟିକେ ବେଳେ ବେଳେ ମନରେ ପକାନ୍ତୁ ।

ମୁଁ ନ ବୁଝିପାରି ପଚାରିଲି - କେଉଁ କଥା କହିଲେ ?

କେଉଁ କଥା ଆଉ - ଏବେ ତ ଆମର କେବଳ ଗୋଟିଏ ଚିନ୍ତା । ମିନିର ବାହାଘର । ବହୁ ପ୍ରସ୍ତାବ ଆସୁଛି । ପାତ୍ର ମନକୁ ଗଲା ବେଳକୁ ଘର ମନକୁ ଯାଉ ନାହିଁ, ଘର ମନକୁ ଗଲେ ପାତ୍ର ପସନ୍ଦ ହେଉନି । ଆଉ ମିନିର ଏକା ଜିଦ୍ ବାହାହେବ କେବଳ ଆଇ.ଏ.ଏସ୍. ଏବଂ ନିଜେ ହେବ ଆଇ.ଏ.ଏସ୍. । ଦୁଇ ଦୁଇଥର ମେନ୍‌ରୁ କଟିଲା । ଏଥର ଖୁବ୍ ଭଲ କରିଛି । ହୋଇଯିବ ବୋଲି କହୁଛି । ଦେଖାଯାଉ କ'ଣ ହେଉଛି । ପାଇଗଲେ ତ ଆଉ ଚିନ୍ତା ନାହିଁ, ତାଙ୍କର ଆଇ.ଏ.ଏସ୍. ବିରାଦରୀରୁ କାହାକୁ ଗୋଟେ ବାହା ହୋଇଯିବ ନିଶ୍ଚୟ । କିନ୍ତୁ ନ ପାଇଲେ ନିଶ୍ଚେ ଏ ପଟରେ ଦେଖିବାକୁ ପଡ଼ିବ । ଗୋଟିଏ ଭଲ ପାତ୍ର ନଜର କରୁଥିବେ ଟିକେ । ଦବା ନବା କଥାପାଇଁ ଚିନ୍ତା କରିବେ ନାହିଁ । ତା' ଭାଇ ବି କହିସାରିଲାଣି - ତମେ ପାତ୍ର ପସନ୍ଦ କର କେବଳ ଦବା-ନବା ଦାୟିତ୍ୱ ମୋର ।

ବହୁ କଷ୍ଟରେ ତାଙ୍କ କବଳରୁ ମୁକୁଳି ସ୍କୁଟରରେ ଷ୍ଟାର୍ଟ ମାରି ମୁଁ ହାୟ କହି ନିଃଶ୍ୱାସଟିଏ ପକାଇଲି । ଘରେ ପହଞ୍ଚିବା ବେଳକୁ ମୋ ସ୍ତ୍ରୀ ମୃଦୁ କ୍ରୋଧ ପ୍ରକାଶ କରି ପଚାରିଲେ- କୁଆଡ଼େ ଲାଖି ଯାଇଥିଲ କି ?

ନାଇଁ ମ ଲାଖିବି କେଉଁଠି, ବଳଭଦ୍ରବାବୁ ଦେଖା ହୋଇଗଲେ ତ, ଗପୁଡି ମଣିଷ, ଗପ ପେଡ଼ି ତ ମେଲି ଦେଇଛନ୍ତି ଯେ, ମୁଁ ଯେତେ ଛାଟିପିଟି ହେଲେ କ'ଣ ମୁକୁଳି ପାରୁଛି । ସେ ତ ଲମ୍ବାଇ ଚାଲିଥିଲେ ଗୋଟିଏ ପରେ ଗୋଟିଏ ଗପ ।

ଡ୍ରେସିଂ ଟେବୁଲ ଆଗରେ ନିଜ ବାଳକୁ ସାଇଜ୍ କରୁଥିବା ମୋ ବଡ଼ପୁଅ ହାଁ-କରି ମୋ ମୁହଁକୁ ଚାହିଁ ପ୍ରଶ୍ନ କଲା - ତମେ ଏବେ ଏବେ ବଳଭଦ୍ରବାବୁଙ୍କ ସହ ଗପୁଥିଲ ବାପା ?

ହଁ - କ'ଣ ହେଲା କି ?

କେଉଁ ବଳଭଦ୍ରବାବୁ କହିଲ - ଡଃ ବଳଭଦ୍ର ରଥ ଯିଏ ଆମ କଲେଜରେ ହିଷ୍ଟ୍ରି ଗିଡର ଥିଲେ ତ ?

ହଁ - ହଁ, ସେଇ ବଳଭଦ୍ର ରଥଙ୍କ ସହ ।

ତାଙ୍କୁ କ'ଣ ଜଣା ନାହିଁ କି ଏ କଥା ?

କେଉଁ କଥା ?

ତାଙ୍କ ଝିଅ ପରା ଆଜି ସେ କପାଳୀ ସେଲୁନ୍‌ର ବାରିକପିଲାଟାକୁ କୋର୍ଟରେ ମ୍ୟାରେଜ୍ କଲା । ତାଙ୍କ ସାହି ତ ଖାଲି ଉଠୁଛି ପଡୁଛି । ଗଣ୍ଡଗୋଳ ହେବାର ଆଶଙ୍କା ମଧ୍ୟ ରହିଛି ।

ତାଙ୍କର କେଉଁ ଝିଅଟା କହିଲୁ ?

କୋଉ ଝିଅଟା ବୋଇଲେ କ'ଣ ତାଙ୍କର ଛଅଟା ନା ନଅଟା ଝିଅ ଯେ, ଗୋଟିଏ ବୋଲି ତ ଝିଅ ତାଙ୍କର ।

ଆରେ ତାଙ୍କ ଝିଅ ପରା ଆଇ.ଏ.ଏସ୍. ପରୀକ୍ଷା ଦେଇଥିଲା ?

ମୋ ପୁଅ ଠୋ- ଠୋ କରି ହସିଉଠି କହିଲା— ତିନି ତିନି ଥର ବି.ଏ. ପରୀକ୍ଷା ଦେଇ ପାସ୍ କରିପାରି ନ ଥିବା ଝିଅ, ସେ ପୁଣି ଆଇ.ଏ.ଏସ୍. ପରୀକ୍ଷା ଦେଇଥିଲା ।

ମୁଁ ଆଉ କିଛି ନ କହି ନୀରବ ରହିବାଟା ଠିକ୍ ହେବ ବୋଲି ଭାବିଲି ।

ରାତିରେ ଝିଅ ଓ ଜ୍ୱାଇଁଙ୍କୁ ଟ୍ରେନ୍‌ରେ ସି ଅଫ କରିଆସିବା ବାଟରେ ମୋ ସ୍ତ୍ରୀଙ୍କୁ କହିଲି, ପଶିଯିବାକି ବଳଭଦ୍ରବାବୁଙ୍କ ଘରଆଡ଼େ ?

କ'ଣପାଇଁ ଯିବ - କ'ଣ କଟା ଘାଆରେ ଚୂନ ଦେବାପାଇଁ ? ତମକୁ ଦେଖିଲେ ସେ ଲଜ୍ଜାରେ ଆହୁରି ବେଶି ଭାଙ୍ଗିପଡ଼ିବେ ।

ମୁଁ ବି ଚିନ୍ତା କଲି ଠିକ୍ କଥା । ଆଜି ସକାଳେ ଯେଉଁ ଝିଅପାଇଁ ଆଇ.ଏ.ଏସ୍. ବର କଥା ମୋତେ କହୁଥିଲେ, ସେ ଗୋଟେ ସେଲୁନ୍‌ବାଲାକୁ ବାହା ହୋଇପଡ଼ିଲା । ମୁଁ ଯାଇ ଏବେ ତାଙ୍କ ପାଖରେ ପହଞ୍ଚିଲେ ସେ ନିଶ୍ଚୟ ସେହି ସକାଳ କଥାକୁ ମନରେ ପକାଇବେ । ନା - ଭଲ ହେବ ଯାଉ କିଛି ଦିନ । ଦୁଃଖଟା ତାଙ୍କର ଦେହସୁହା ହୋଇଯାଉ, ଯିବି ।

ଫେରିବା ପରେ ମୁଁ ଚୁପ୍‌ଚାପ୍ ଶୋଇପଡ଼ିଲି, ମୋତେ ଲାଗୁଥିଲା ଯେମିତି ବଳଭଦ୍ରବାବୁଙ୍କ ଦୁଃଖ ମୋ ଭିତରେ ସଞ୍ଚରି ଯାଉଛି ।

ସକାଳେ ମୁଁ ଖୁବ୍ ଡେରି ଯାଏ ଶୋଇ ରହିଥିଲି । ମୋ ସ୍ତ୍ରୀ ଯାଇ ଡାକିଲେ- ହେ, ଉଠ, ଯାଅ ଦେଖ କ'ଣ ହୋଇଛି ।

ମୁଁ ଧଡ଼ପଡ଼ ହୋଇ ଉଠିପଡ଼ି ପଚାରିଲି— କ'ଣ ହୋଇଛି ?

କାଲି ରାତିରେ ବମ୍ବେ ମେଲ୍ ତଳେ ବଳଭଦ୍ରବାବୁ ଆତ୍ମହତ୍ୟା କରିଛନ୍ତି ବୋଲି ପୁଅ ଆସି କହୁଥିଲା ।

ହାଁ —

ଷ୍ଟେସନଠାରୁ ଟିକିଏ ଆଗରେ ସେ ଆତ୍ମହତ୍ୟା କରିଥିଲେ । ରାତିଭରି କେହି ଦେଖିପାରି ନ ଥିଲେ । ଆଜି ସକାଳୁ ଶବ ସନାକ୍ତ ହୋଇ ତାଙ୍କ ଘରକୁ ଅଣାଯାଇଛି ।

ମୁଁ ତୁରନ୍ତ ଉଠିପଡ଼ି ମୁହଁ ଧୋଇସାରି ସ୍କୁଟର ବାହାର କରି ତାଙ୍କ ଘର ଆଡ଼େ ଚାଲିଲି । ପହଞ୍ଚିବା ବେଳକୁ ଶବ ସତ୍କାରର ବ୍ୟବସ୍ଥା ହେଉଥାଏ । କୋକେଇ ସଜାଡୁ ସଜାଡୁ ଜଣେ ଲୋକ ପଚାରିଲା- ସେ ମନୁ କୁଆଡ଼େ ଗଲା ଡାକ ତ, ବୋରିଆଟିଏ କରିବାକୁ ବାରିକକୁ କହି ବ୍ୟବସ୍ଥା କରିବାକୁ କହିଥିଲି, କୁଆଡ଼େ ଯାଇଛି ସେତିକିବେଳୁ । ରାତିଭରି ତ ସେଠାରେ ଶବ ପଡ଼ିରହିଥିଲା, ସକାଳୁ ସକାଳୁ ପୋଷ୍ଟମର୍ଟମ ଝମେଲା ଲାଗିଲା । ଆଉ ଡେରି କରି କ'ଣ ପଚା ଶବ ସତ୍କାର କରିବ ।

ମନୁକୁ ଖୋଜୁଥିବା କଥା ଶୁଣି, ପ୍ରସ୍ତୁତି କାର୍ଯ୍ୟରେ ଲାଗିଥିବା ସେ ଲୋକଜଣଙ୍କୁ ମୁଁ ଯାଇ ଧୀରେ କରି ପଚାରିଲି ମନୁ କ'ଣ ଖବର ପାଇ ବମ୍ବେରୁ ଆସି ପହଞ୍ଚିଗଲାଣି ?

ମୋ ପ୍ରଶ୍ନ ଶୁଣି ସେ ଯେମିତି ବିସ୍ମୟ ଭାବ ପ୍ରକାଶ କରି ମୋତେ ଚାହିଁଲେ, ମୁଁ ମନେ ମନେ ଶଂକିଗଲି ଯେ ଏପରି ସମୟରେ ଏମିତି ପ୍ରଶ୍ନଟିଏ ମୁଁ କାହିଁକି ପଚାରିଲି ବୋଲି ।

ମୋ ମନୋଭାବକୁ ଠିକ୍ ଠଉରାଇ ନେଇ ସେ ଲୋକଟି କହିଲେ- ହଁ, ବାପ ଗୁଣେ ପୁଅ । ବାପ ଏଠି ବସି ରୋମ୍‌ର ସ୍ୱପ୍ନ ଯଦି ଦେଖିପାରୁଥିଲା, ପୁଅ ମଣି ଓଝା ଅପେରା ପାର୍ଟିର ନାଚୁଆ ରୋଲ୍‌ରୁ ବମ୍ବେ ସିନେମା ଜଗତର ସ୍ୱପ୍ନ ଦେଖିବା କିଛି ବିଚିତ୍ର କଥା ନୁହେଁ । ଏ ରୋଗଟା ତା' ବାପ ପାଖରେ ଥିଲା ଜାଣିଥିଲି, ପୁଅର ମଧ ସେଇ ରୋଗ । ଦେଖିଲେଣି ଆପଣ, ମଲା ବେଳକୁ କ'ଣ ଲେଖିଯାଇଛନ୍ତି ଡେଥ୍ ନୋଟ୍‌ରେ ।

ମୁଁ ତାଙ୍କ ପାଖରୁ ବଳଭଦ୍ରବାବୁଙ୍କ ଡେଥ୍ ନୋଟ୍‌ଟି ଆଣି ପଢ଼ିଲି । ସେ ଲେଖିଥିଲେ—"ମୋ ଜୀବନ ପରି ମୋ ମୃତ୍ୟୁଟା ମଧ ମିଛ । ମୁଁ ମୃତ୍ୟୁ ପରର ଇତିହାସକୁ ଉନ୍ମୋଚନ କରିବାକୁ ଏ ପଦକ୍ଷେପ ନେଉଛି ।"

# ହାରି

ରବିବାର। କୋର୍ଟ, କଚେରି, ଓକିଲ, ମହକିଲ, ସମସ୍ତ ଝମେଲାରୁ ମୁକ୍ତିର ଦିନ। ଆଜି ଦିନଟା ସମ୍ପୂର୍ଣ୍ଣ ପାରିବାରିକ ଦିନ। ଘରର ଚାକରପିଲା ଯାଇଛି କାଲୁ ମିଆଁ ଦୋକାନକୁ ମାଂସପାଇଁ, କାଲୁମିଆଁର ନିୟମିତ ଗ୍ରାହକ ସିଏ, ସେ ଭଲକରି ଜାଣେ ବାବୁଙ୍କ ପସନ୍ଦର ମାଂସ। ମାଂସ ଦେବାପରେ ଅଲଗା କରି ବାନ୍ଧିଦିଏ ଖାସି କଲିଜାରୁ ଅଧକେଜିଏ। ସେହି କଲିଜା କଷାକୁ ବାବୁ ଖାଇବା ପୂର୍ବରୁ ଚାଖଣା କରନ୍ତି, ଅବଶ୍ୟ ସେଥିସହ ନିଅନ୍ତି କିଛି ବିଦେଶୀ ପାନୀୟ। ଅର୍ଥ, ପ୍ରତିପତ୍ତି ଓ ସୁନାମ ସବୁ ଆସିବା ପରେ କିଛିଟା ବିଦେଶୀ କାଇଦା ମଧ୍ୟ ଦରକାର। ଯଦିଓ ବାବୁ ନୈଷ୍ଠିକ ବ୍ରାହ୍ମଣ ପରିବାରରୁ ଆସିଥିଲେ, ପ୍ରଚୁର ଅର୍ଥର ଆଗମନ ପରେ ସେ ନୈଷ୍ଠିକତାକୁ ଅବା କେତେଦିନ ଧରି ରଖି ପାରିଥାଆନ୍ତେ। ସବୁଦିନ ପାର୍ଟି, କ୍ଲବ୍ ଆଟେଣ୍ଡ କଲାବେଳେ କେତେଦିନ ପର୍ଯ୍ୟନ୍ତ ଅନ୍ୟମାନଙ୍କର ବାଧ୍ୟବାଧକତାକୁ ଏଡ଼ାଇ ସେ କହିପାରିଥାନ୍ତେ, ନା - ମୁଁ ଏସବୁ ଛୁଏଁନି ବୋଲି। ତେଣୁ ଧୀରେ ଧୀରେ ସେ ଶିଖିଲେ ନିଜକୁ ପରିବର୍ତ୍ତନ କରିବାକୁ। କେବଳ ନିଜେ ତ ପରିବର୍ତ୍ତନ ହେଲେ ଚଳିବ ନାହିଁ, ତେଣୁ ନିଜ ପରିବାରକୁ ମଧ୍ୟ ପରିବର୍ତ୍ତନ କରାଇଲେ ପାଶ୍ଚାତ୍ୟ ସଂସ୍କୃତିର ମନ୍ତ୍ର ଶିଖାଇ।

ଯଦିଓ ବାବୁ ଜିଲ୍ଲା କୋର୍ଟରେ ଓକିଲାତି କରୁଥିଲେ, ତଥାପି ମହେଶ ପୂଜାରୀ କହିଲେ ସାରା ଓଡ଼ିଶା ତାଙ୍କୁ ଜାଣୁଥିଲା। କ୍ରିମିନାଲ୍ କେଶ୍‌ରେ ତାଙ୍କର ନାଆଁଡାକ ଢେର। ମର୍ଡ଼ର କେଶ୍‌ରେ ଆସାମୀମାନେ ଖୋଜି ଖୋଜି ଆସନ୍ତି ତାଙ୍କ ପାଖକୁ। ତେଣୁ ଜିଲ୍ଲା କୋର୍ଟରେ ଯେତେଦିନ ନୁହଁ ହାଇକୋର୍ଟରେ ତା'ଠାରୁ ଅଧିକା ଦିନ ଡ୍ୟୁଟି ପଡ଼େ ତାଙ୍କର। ପଇସା ବି ସେମିତି ଆସେ। ତାଙ୍କର ଫିସ୍ ଏବେ ହଜାରରେ ନୁହେଁ ଲକ୍ଷରେ ପହଞ୍ଚିଲାଣି। ନିଜ ପୁଅ ଅମିତାଭ ସହ ଆହୁରି ଚାରିଜଣ ଆସିଷ୍ଟାଣ୍ଟ କାମ କରୁଛନ୍ତି ତାଙ୍କ ପାଖରେ, ପ୍ରାଥମିକ ଶୁଣାଣି ଓ କେଶ୍ ପ୍ରେଜେଣ୍ଟେସନ ସେମାନେ କରନ୍ତି, ମହେଶ ବାବୁ କେବଳ କେଶ୍‌ର ଫାଇନାଲ୍ ସମୟକୁ ଯାଆନ୍ତି।

ଏତେ ବ୍ୟସ୍ତତାସତ୍ତ୍ୱେ ମଧ୍ୟ ରବିବାର ଦିନଟିକୁ ସେ ରଖନ୍ତି ବ୍ୟକ୍ତିଗତ ଓ ପାରିବାରିକ ଦିନ ହିସାବରେ।

ସେଦିନ ବ୍ରେକ୍‌ଫାଷ୍ଟ କଲା ପରେ ନିଜ ଦ୍ୱିତଳ ପ୍ରାସାଦର ବାଲ୍‌କୋନୀରେ ସୋଫା ଉପରେ ବସି ସକାଳର ଖବର କାଗଜ ଦେଖୁଥିଲେ। ତାଙ୍କ ଘରର ଗେଟ୍ ଖୋଲିବାର ଶବ୍ଦ ଶୁଣି ଖବରକାଗଜରୁ ମୁହଁ ଉଠାଇ ଚାହିଁଲେ ଗେଟ୍‌ଆଡ଼େ, ଆରେ

ଇଏ କ'ଣ! ଦଳେ ଭିକାରି ନିର୍ଭୟରେ ଗେଟ୍ ଖୋଲି ତାଙ୍କର ହତା ଭିତରକୁ ପଶି ଆସୁଛନ୍ତି। ତାଙ୍କର ଗେଟ୍‌କୁ ଏମିତି ଖୋଲି ପଶିବାକୁ କିଏ ଅନୁମତି ଦେଲା ?

ଆମେ ଭିକାରି ଆଜ୍ଞା - ଅନୁମତି ମାଗିଲେ କ'ଣ ଆମକୁ ମିଳିବ ? ଆମେ ଏମିତି ଗେଟ୍ ଖୋଲି ଭିତରକୁ ପଶି ଭିକ ମାଗୁ। ଗତ ସପ୍ତାହରୁ ଆମ ଆସୋସିଏସନ୍ ନୂଆ ନିୟମ ଲାଗୁକଲା। ସହରରେ ଥିବା ଘରମାନଙ୍କରେ କେବଳ ସପ୍ତାହର ଗୋଟିଏ ଦିନ ଭିକ ମଗା ହେବ ସାମୂହିକ ଭାବେ। ସେଥିପାଇଁ ଆମେ ସମସ୍ତେ ଆସିଛୁ।

ତମମାନଙ୍କର ଭିକ୍ଷାବୃତ୍ତିପାଇଁ ତମ ଆସୋସିଏସନ୍ କ'ଣ ନିୟମ କଲା ସେଥିରେ ମୋର ଯାଏ ଆସେ ନାହିଁ, ତମେମାନେ ବିନା ଅନୁମତିରେ ମୋ ଗେଟ୍ ଭିତରକୁ ପଶିଲ କାହିଁକି ?

ଭିକାରିମାନଙ୍କ ଭିତରୁ ଜଣେ ତାଙ୍କଆଡ଼କୁ ଚାହିଁ କହିଲା - ବାବୁ! ମୋତେ ଚିହ୍ନି ପାରୁଛନ୍ତି ?

ହୁଁ - ତୁ ରାଷ୍ଟ୍ରପତି ନା ପ୍ରଧାନମନ୍ତ୍ରୀ ଯେ ମୁଁ ତୋତେ ଚିହ୍ନି ଥାଆନ୍ତି।

ନା - ମୁଁ ସେସବୁ କେହି ନୁହଁ, କେବଳ ଆପଣଙ୍କର ଜଣେ ମକ୍‌କିଲ ଥିଲି। ଗୋଟିଏ କେଶ୍‌ରୁ ମୁକୁଳିବାପାଇଁ ଅନେକ ଥର ଆସିଛି ଆପଣଙ୍କ ପାଖକୁ।

ଲୋକଟାକୁ ନିରୀକ୍ଷଣ କଲେ ମହେଶବାବୁ। କୁଷ୍ଠରୋଗରେ ହାତ ଗୋଡ଼ ସବୁ ଛିଡ଼ିଯାଇଛି। ମୁହଁଟା ବି. ବିକୃତ ଦେଖାଯାଉଛି। ସେ ଯେତେ ଚେଷ୍ଟା କଲେ ବି ତାକୁ ଚିହ୍ନିପାରିଲେ ନାହିଁ।

ମୁଁ ଜାଣେ, ଆପଣ ମୋତେ ଚିହ୍ନିପାରୁ ନ ଥିବେ। ଯେଉଁ ହାତରେ ମୁଁ ଆପଣଙ୍କୁ ଲକ୍ଷ ଲକ୍ଷ ଟଙ୍କା ଗଣିଦେଇ କେଶ୍‌ରୁ ମୁକୁଳିଲି ସେ ହାତ ବି ଆଜି ମୋର ନାହିଁ। ମୋ ପଇସା ଓ ଆପଣଙ୍କ ବୁଦ୍ଧି ବଳରେ ସିନା ମୁଁ ଉପଯୁକ୍ତ ସାକ୍ଷୀ ପ୍ରମାଣ ଅଭାବରୁ ନିର୍ଦ୍ଦୋଷରେ ତଳ କୋର୍ଟରୁ ଖଲାସ୍ ପାଇଗଲି ହେଲେ ଉପରବାଲା କୋର୍ଟରୁ ଦୋଷମୁକ୍ତ ହୋଇ ମୁକୁଳିପାରିଲି ନାହିଁ। କେଶ୍‌ରେ ଜିତିବାପାଇଁ ତ ସବୁ ବିକି ଭାଙ୍ଗି ମୁଁ ସର୍ବସ୍ୱାନ୍ତ ହୋଇସାରିଥିଲି, ଜିତିବା ପରେ ଏ ରୋଗଟା ବି ମୋ ଶରୀରକୁ ସର୍ବସ୍ୱାନ୍ତ କରିଦେଲା। ମୁଁ ଭୈରବ ବିଶ୍ୱାଳ ଆଜ୍ଞା! ପଙ୍କଜିନୀ ରେପ୍ ଆଣ୍ଡ ମର୍ଡ଼ର କେଶ୍‌ର ଆସାମୀ। ଏଥର ଚିହ୍ନି ପାରିଲେ ?

ଭୈରବ ବିଶ୍ୱାଳକୁ ଏମିତି ରୂପରେ ଦେଖି ସ୍ତବ୍ଧ ହୋଇଗଲେ ମହେଶ୍‌ବାବୁ। ପଙ୍କଜିନୀ ରେପ୍ ଆଣ୍ଡ ମର୍ଡ଼ର କେଶ୍ ସେତେବେଳେ ଥିଲା ଏକ ଚର୍ଚ୍ଚିତ କେଶ୍। ସମସ୍ତ ଗଣମାଧ୍ୟମରେ ବେଶ୍ ଆଲୋଡ଼ନ ସୃଷ୍ଟି କରି ସରକାରଙ୍କୁ କାଠଗଡ଼ାକୁ ଟାଣି ଆଣିଥିଲା କେଶ୍‌ଟି। ଲୋକଲୋଚନରେ କେଶ୍‌ଟିର ଗୁରୁତ୍ୱ ଏତେ ବଢ଼ିଯାଇଥିଲା

ଯେ ବହୁ ଜାଗାରେ ଏଥିପାଇଁ ଆନ୍ଦୋଳନ ଓ ଧର୍ମଘଟ ହୋଇ ଆସାମୀକୁ ତୁରନ୍ତ ଫାଶୀ ଦେବାପାଇଁ ଦାବି ହେଉଥିଲା। ସେ ପରିସ୍ଥିତିରେ କୌଣସି ଓକିଲ ଆସାମୀକୁ ସାହାଯ୍ୟ କରିବାପାଇଁ ଆଗଭର ହେଉ ନ ଥିଲେ। ସବୁ ଓକିଲ ଧରିନେଇଥିଲେ ଯେ ଆସାମୀ ତରଫରୁ ଲଢ଼ିବା ଅର୍ଥ ସମାଜରେ ନିନ୍ଦିତ ହେବା ସାର ହେବ। ବରଂ ଭଲ ସରକାର ତାକୁ ତା'ର ଓକିଲ ଯୋଗାଇ ଦିଅନ୍ତୁ। ଏପରି ଏକ ସମୟରେ ସେ ବାହାରିଲେ ଭୈରବ ବିଶ୍ୱାଳର ଓକିଲ ହେବାକୁ। ଏହା ତାଙ୍କର ତା'ପ୍ରତି ଦୟା କିମ୍ବା ତା' କେଶ୍ ଲଢ଼ିବାକୁ ଓକିଲ ନ ମିଳୁଥିବାର ବିବଶତା ପାଇଁ ନ ଥିଲା। ତାକୁ ସାହାଯ୍ୟ କରିବା ପଛରେ ଥିଲା ପ୍ରଚୁର ଅର୍ଥପ୍ରାପ୍ତିର ଲାଳସା ଏବଂ ଯଦି ଜିତିଯାଆନ୍ତି ତେବେ ତାଙ୍କର ପ୍ରତିଷ୍ଠା ବଢ଼ିବାର ମହତ୍ତ୍ୱାକାଂକ୍ଷା।

ଫାଶୀ ଦଣ୍ଡରୁ ମୁକୁଳିବାପାଇଁ ଭୈରବ ବିଶ୍ୱାଳ ଅକାତରେ ବିକ୍ରି କରିଚାଲିଥିଲା ତା'ର ସମସ୍ତ ସ୍ଥାବର ଓ ଅସ୍ଥାବର ସମ୍ପତ୍ତି ଏବଂ ବିନା ମୂଲଚାଲରେ ପୂର୍ତ୍ତିକରି ଚାଲିଥିଲା ମହେଶ୍ୱରବାବୁଙ୍କର ସମସ୍ତ ଦାବିକୁ। ଶେଷରେ ତାଙ୍କର ନଜର ପଡ଼ିଥିଲା ସହରର ଉପକଣ୍ଠରେ ଭୈରବର ଥିବା ଏକ ଏକର ବିଶିଷ୍ଟ ଏହି ଜମିଟି ଉପରେ। ତାକୁ ଦୋଷମୁକ୍ତ କରାଇବାର ଶେଷ ତାରିଖ ପୂର୍ବରୁ ହିଁ ସେ ଦାବି କରିଥିଲେ ସେହି ଜମିଖଣ୍ଡକ। ଏତେ ଯିବା ପରେ ଆଉ ପଛକୁ ଚାହିଁ ଲାଭ କ'ଣ ନ୍ୟାୟରେ ସେତକ ବି ଭୈରବ ବିଶ୍ୱାଳ ଲେଖି ଦେଇଥିଲା ତାଙ୍କ ନାଆଁରେ। ସେହି ଜାଗା ଉପରେ ଠିଆ ହୋଇଛି ତାଙ୍କର ଏହି ସୁରମ୍ୟ ଅଟ୍ଟାଳିକା। ସେତେବେଳେ ଯଦିଓ ଜାଗାଟା ସହରର ଉପକଣ୍ଠରେ ଥିଲା ମାତ୍ର ଏହି କୋଡ଼ିଏ ବର୍ଷ ଭିତରେ ତାହା ସହରର ମଧ୍ୟସ୍ଥଳୀ ହୋଇଗଲାଣି।

ମୋତେ ଏବେ ମନେ ପକାଇ ପାରିଲେ ଆଜ୍ଞା? ମୋର ଏ ରୂପ ଯାହା ହୋଇଛି ଆପଣ ଚିହ୍ନି ନ ପାରିବା ବି ସ୍ୱାଭାବିକ କଥା। ନାରୀର ନିଃଶ୍ୱାସ ଇଏ ଆଜ୍ଞା - ନିଆଁ ପରି ମୋ ପିଛା ଛାଡ଼ିଲା ନାହିଁ। ଯେଉଁ ନିଃଶ୍ୱାସରେ ରାବଣ ଜଳିପୋଡ଼ି ଛାର୍‌ଖାର ହୋଇଥିଲା, ଯେଉଁ ନିଃଶ୍ୱାସରେ ମାନୀ ଦୁର୍ଯ୍ୟୋଧନର ଉରୁଭଙ୍ଗ ହେଲା, ସେଇ ନିଃଶ୍ୱାସ ଇଏ। ମୁଁ ବା କି ଛାର ମଣିଷ। ସେତେବେଳେ ସେହି ଦୋଷକୁ ସ୍ୱୀକାର ନ କରି ସେଥିରୁ ମୁକୁଳିବାପାଇଁ ପ୍ରାଣପଣେ ଚେଷ୍ଟା କରୁଥିଲି, ହେଲେ ମୁକୁଳି ସାରିବାପରେ ମୋର ଲାଭ କ'ଣ ହେଲା? ସେଇ ପାପପାଇଁ ମୋର ସବୁ ଚାଲିଯିବା ପରେ ଏବେ ସେଇ ପାପଟାକୁ ହିଁ ମୋର ନିଜର କରିବାକୁ ଲାଗି ପଡ଼ିଛି। କିଏ ଯଦି ମୋତେ କେଉଁଠି ନ ଚିହ୍ନିପାରୁଛି ତେବେ ମୁଁ ନିଜକୁ ଆଉ ଭୈରବ ବିଶ୍ୱାଳ କହୁନି - କହୁଛି ପଙ୍କଜିନୀ ରେପ୍ ଆଣ୍ଡ ମର୍ଡ଼ର କେଶ୍‌ର ଆସାମୀ ବୋଲି। ଏହାଦ୍ୱାରା ମୋର ପାପ ବି କିଛି ଲାଘବ ହେଉଛି ଓ ଆତ୍ମାକୁ ଶାନ୍ତି ମିଳୁଛି।

